# ପରଶ ମଣି



ଧରଣୀ ଧର ପରିଡ଼ା

# ପରଶମଣି

ଲେଖକ

ଶ୍ରୀ ଧରଣୀଧର ପରିଡ଼ା

# ପରଶମଣି

ଲେଖକ :

**ଶ୍ରୀ ଧରଣୀଧର ପରିଡ଼ା**

ପ୍ରଧାନ ଶିକ୍ଷକ

ନେଉଳପୁର ପ୍ରାଥମିକ ବିଦ୍ୟାଳୟ

ପୋ- ନେଉଳପୁର, ଯାଜପୁର

*ପ୍ରକାଶିକା :*

**ପ୍ରତିଭା ପରିଡ଼ା**

**ଚନ୍ଦନ ପ୍ରକାଶନୀ**

ସୁନ୍ଦରିଆ, ନେଉଳପୁର, ଯାଜପୁର

*ପ୍ରଚ୍ଛଦ ଶିଳ୍ପୀ :*

**ଧରଣୀଧର ବେହେରା**

ସାତୋରୀ, ଛତିଆ, ଯାଜପୁର

*ମୁଦ୍ରଣ :*

**ଇଷ୍ଟର୍ଣ୍ଣ ଗ୍ରାଫିକ୍ସ**

୨୧୩, ମଞ୍ଚେଶ୍ୱର ଶିଳ୍ପାଞ୍ଚଳ, ଭୁବନେଶ୍ୱର-୧୦

*ପ୍ରଥମ ସଂସ୍କରଣ :*

**୧୯୯୪**

*ପରିବେଷକ :*

**ପୁସ୍ତକ ମହଲ**, ଝାରକା, କଟକ

ମୂଲ୍ୟ- ୮.୦୦ (ଆଠ ଟଙ୍କା)

# ଅଭିମତ

ଲେଖକ ଧରଣୀଧର ପରିଡାଙ୍କ ଲିଖିତ ପାଣ୍ଡୁଲିପି 'ପରଶମଣି' ପାଠ କରିବାର ସୁଯୋଗ ପାଇ ମୁଁ ଆନନ୍ଦିତ । ବହୁଦିନ ଧରି ଧରଣୀବାବୁ ଲେଖାଲେଖି କରୁଛନ୍ତି ଏବଂ ତାଙ୍କର ଏକ ପୁସ୍ତକ 'ଅନ୍ଧାରରୁ ଆଲୁଅକୁ' ପୂର୍ବରୁ ପ୍ରକାଶିତ ହୋଇଛି ।

'ପରଶମଣି' ପାଣ୍ଡୁଲିପିରେ ପାଞ୍ଚୋଟି ଗଳ୍ପ ସନ୍ନିବେଶିତ ହୋଇଛି । ବିଷୟବସ୍ତୁ ଓ ଶୈଳୀ ଦୃଷ୍ଟିରୁ ଗଳ୍ପଗୁଡ଼ିକ ଜନଶିକ୍ଷା ଉପଯୋଗୀ ହୋଇଛି ।

ଅଧିକାଂଶ ଗଳ୍ପ ଖୁବ୍ ଶିକ୍ଷଣୀୟ । ଭାଷାରେ ମଧ୍ୟ ଆକର୍ଷଣ ରହିଛି । ଶୈଳୀରେ ମାଦକତା ରହିଛି । ଆମ ସମାଜରେ ରହିଥିବା ଅନ୍ଧବିଶ୍ୱାସ, ବୈଷମ୍ୟ ଓ ଅଜ୍ଞତା ବିରୁଦ୍ଧରେ ସ୍ୱର ଉତ୍ତୋଳିତ ହୋଇଛି । ସେଥିପାଇଁ ଲେଖକଙ୍କର ଉଦ୍ୟମ ଅଭିନନ୍ଦନୀୟ ।

ପୁସ୍ତକଟିର ବହୁଳ ପ୍ରସାର ଓ ଲେଖକଙ୍କର ସାରସ୍ୱତ ସାଧନାରେ ଉତ୍ତରୋତ୍ତର କାମନା କରୁଛି ।

(ଇତି)

ସମ୍ବଲପୁର
ତା- ୧୧/୯/୯୪

ଡକ୍ଟର ଜଗନ୍ନାଥ ମହାନ୍ତି, ଅଧ୍ୟକ୍ଷ
ଡଃ ପର୍ଶୁରାମ ମିଶ୍ର
ଅଗ୍ରଗାମୀ ଶିକ୍ଷା ପ୍ରତିଷ୍ଠାନ, ସମ୍ବଲପୁର

# ତୁମପାଇଁ ପଦେ...

ଅନ୍ଧବିଶ୍ୱାସରେ ଭରା ଆମ ଏଇ ପୃଥିବୀ । ଭୂତ ପ୍ରେତ, ଡାହାଣୀ, ଠାକୁରାଣୀ ଆଦିର ଦ୍ୱାହି ଦେଇ ଠକି ଚାଲିଛନ୍ତି ସରଳ ନିରୀହ ଲୋକ-ମାନଙ୍କୁ କେତେକ ସ୍ୱାର୍ଥପର ମଣିଷ । ଅମୃତବୋଳା ପୃଥିବୀରେ ଗରଳ ଢାଳି ଦେଇଛନ୍ତି ସେମାନେ ।

ଛିନ୍‌ଭିନ୍ ପୃଥିବୀକୁ ସଜାଡ଼ିବାକୁ ଭଗବାନ୍ ଓହ୍ଲାଇ ଆସନ୍ତି ସରଗରୁ ଆମ ପାଖକୁ । ତାଙ୍କରି ପରଶ ପାଇ ନିଜକୁ ସଜାଡ଼ି ନେଉ ଆମେ, ଦୂରେଇ ଯାଏ ସ୍ୱାର୍ଥ, ବଦଳିଯାଏ ମଣିଷର ପ୍ରକୃତି, ସବୁଜ କ୍ଷେତରେ ସୁନା ଫସଲ ଖେଳେ । ଆମେ ଖେଳୁ ହାତକୁ ହାତ ଛନ୍ଦି । ନାନାବାଦ୍ୟ ଗୀତ ଗାଇ ନାଚୁ, ହସୁ ମନ ମଉଜରେ 'ପରଶମଣି'କୁ ପାଖରେ ପାଇ ।

ଜାଣି ପାରୁନା ଆମେ, ବୁଝି ପାରୁନା ଆମେ, ଆତ୍ମବିଭୋର ମଧ୍ୟରେ ହିଂସା, ଈର୍ଷା କରେ । ଆମ ମନରେ ଛପି ଛପି ପଶିଯାଏ । ହରାଇବସୁ ପାଇଥିବା 'ପରଶମଣି'କୁ ।

ଚେତନା ପଶେ, ନୟନରୁ ଧାର ଧାର ଲୋତକ ଝରେ । ହେଲେ ନିରୁପାୟ । ପରଶମଣିଟି ଆମକୁ ଛାଡ଼ି ଚାଲିଯାଏ ସେଇ ସରଗକୁ । ପ୍ରାର୍ଥନା କରୁ ସବୁ ଭେଦାଭେଦ ଭୁଲି । ହାତରେ ହାତ ମିଳାଇ । ମନ୍ଦିର, ଗିର୍ଜା, ମସ୍‌ଜିଦ୍‌ର ସେଇ ପାଷାଣ ମୂର୍ତ୍ତି ପାଖରେ ।

ମନରୁ ହିଂସା, କ୍ରୋଧ ଅପସରି ଯାଉ । ଅନ୍ଧବିଶ୍ୱାସ ଦୂର ହେଉ । ମନ ଫୁଲରେ ଭରିଯାଉ । ପରଶମଣି ପାଖରେ ଥାଉ । ଏତିକି କାମନା ।

– ଲେଖକ

# ସୂଚୀ

କ୍ର.ନଂ ବିଷୟ ପୃଷ୍ଠା








ସୁକାନ୍ତିହିପୁର । ବଣପାହାଡ଼ ଘେରା ଗହଳ ଜଙ୍ଗଲ । ନଈଟିଏ କୁଳୁକୁଳୁ ହୋଇ ଗାଁ ପାଖରେ ବହିଯାଇଛି । କାଚକେନ୍ଦୁ ପରି ନଈର ଜଳ, ଯେମିତିକି ଅମୃତର ଧାରା । ବଣର ଫଳମୂଳ ସାଙ୍ଗକୁ ନଈର ଜଳ ଏଇ ମାଲପାହାଡ଼ିଆ ବାଞ୍ଜୋରି ଜାତିର ଲୋକମାନଙ୍କୁ ବେଶ୍ କୁନ୍ଦିଲା କୁନ୍ଦିଲା କରିଦେଇଛି । ଫୁରୁଫୁରୁ ନୁଖୁରା କେଶକୁ ଅଣ୍ଟାରେ ବନ୍ଧା କଉପୁନି । ହାତରେ ତିଆରି କାଣ୍ଡ । ଶିକାରର ନିଶା, ବଣ ଜଙ୍ଗଲରେ ବୁଲି ଗୁଣ୍ଡୁଚିମୂଷା ଆଉ ଚଢ଼େଇମାନଙ୍କୁ ଶିକାର କରିବା ଏଇ ପିଲାମାନଙ୍କର ନିତିଦିନିଆ କାମ ।

ଦୀର୍ଘ ସତଚାଳିଶି ବରଷର ସ୍ୱାଧୀନତା ଏଇ ବଣ ମୁଲକରେ ଡେଇଁ ଡେଇଁ ଯାଇଥିଲେ ମଧ୍ୟ ଗାଁର ଲୋକମାନେ ସ୍ୱାଧୀନତା କ'ଣ ଜାଣିନାହାନ୍ତି । ଶିକ୍ଷା ଆଉ ସ୍ୱାସ୍ଥ୍ୟର ଆଲୋକଠାରୁ ବହୁ ଦୂରରେ ରହିଯାଇଛନ୍ତି । ଏମାନେ କେବଳ ଏତିକି ଜାଣନ୍ତି - ବଣ ହେଉଛି ତାଙ୍କର ମୁଲକ, ତାଙ୍କର ଜୀବନ, ତାଙ୍କରି ସୁଖ ଦୁଃଖର ଚିର ସହଚର । ମନରେ ହିଂସା ନାହିଁ, କପଟତା କ'ଣ ଜାଣନ୍ତି ନାହିଁ ।

ଆକାଶରେ ପୂରାଚାନ୍ଦ ଦେଖିଲେ, ହାଣ୍ଡିଆ ପିଇ ମାଦଳ ବଜାଇ ଝିଅପୁଅମାନେ ଅଣ୍ଟାରେ ହାତକୁ ହାତ ଛନ୍ଦି ନାଚନ୍ତି । ବଇଁଶୀର ସୁରେ ସୁରେ ମନର ଭାବକୁ କୋଇଲିର କୁହୁ କୁହୁ ତାନରେ ଗାଇ ଗାଇ ମନଖୁସିରେ ପାଦକୁ ପାଦ ମିଳାଇ ନାଚନ୍ତି । ମତୁଆଲା ହୁଅନ୍ତି, ସତେ ଯେମିତି ସରଗରୁ ଅପ୍‌ସରୀମାନଙ୍କ ସହିତ ଗନ୍ଧର୍ବମାନେ ଓହ୍ଲାଇ ଆସନ୍ତି ଏଇ ବଣର ମରତକୁ ।

ସବୁଦିନ ସମାନ ଯାଏନା । ସୁଖର ରାତି ସରିସରି ଆସିଲା । ଘନ ଅନ୍ଧାରର କଳାରାତି ମାଡ଼ି ଆସିଲା ସରଗର ଏଇ ନନ୍ଦନକାନନକୁ । ଯେଉଁ ନଈର ପୀୟୂଷ ଧାରା ପାନକରି ଏଇ ପାହାଡ଼ିଆ ଲୋକମାନେ ଫୁଲି ଉଠୁଥିଲେ - ଆଜି ସେଇ ନଦୀ ତାଙ୍କ ପାଇଁ ବିଷକନ୍ୟା ସାଜିଛି । ଭେଣ୍ଡିଆ ମରଦ ଆଉ ଯୁବତୀଗୁଡ଼ାଙ୍କୁ କଙ୍କାଳସାର କରିଦେଲାଣି । ନେଙ୍ଗୁଟିପିନ୍ଧା ଛୁଆମାନେ ଆଉ ଫୁକୁ ଫୁକୁ ହୋଇ ବଣ ପାହାଡ଼ରେ ବୁଲୁନାହାନ୍ତି । ଅନ୍ଧାରୁଆ ଘର ଭିତରେ କତରାନଗା ହୋଇଗଲେଣି ।

ନଈର ଉପର ମୁଣ୍ଡରେ କାରଖାନା ବସିଲା, କାରଖାନାର ମଇଳାପାଣି ନଈରେ ମିଶିଲା । ପାଣି ଦୂଷିତ ହେଲା । ସେହି ଦୂଷିତ ପାଣି ପିଇ ଲୋକମାନେ ରୋଗରେ ପଡ଼ିଲେ । ହେଲେ ଏ କଥା ସେମାନେ ଜାଣି ପାରିଲେ ନାହିଁ ।

ଗାଁରେ ଭାଳେଣି ପଡ଼ିଲା । କୁଳମାତା ଆମ ଉପରେ ରୋଷ କରିଛନ୍ତି । ଗାଁ ଛାଡ଼ି ମା' ଚାଲିଯାଇଛନ୍ତି । ''ମାଆ ବିନା ଆମେ ରହି ପାରିବା ନାହିଁ'' । ମୁଖିଆ ଅର୍ଜୁନ ଅହିରି ମୁଣ୍ଡରେ ହାତ ଦେଇ ବସିଛି । କ'ଣ କରିବ ? ଗାଁର ଲୋକମାନଙ୍କୁ କେମିତି ଏଇ ଘୋର ବିପଦରୁ ରକ୍ଷା କରିବ । ମାଆଙ୍କୁ ମାଜଣା କରିବ । ଦୁଃଖ ଜଣାଇବ ।

ଗୁଣିଆ ଓରଫ ଜାଙ୍ଗୁରକୁ ଡ଼ାକିଲେ, ମାଆ ଠାକୁରାଣୀ 'କୁଳମାତା' ପାଖରେ କାଳିସୀ ଲାଗିବ । ମାଆଙ୍କଠାରୁ ଯାହା ଆଦେଶ ମିଳିବ ସେଇଆ ହେବ ।



ଗାଁର ସବୁ ଲୋକମାନେ ଠାକୁରାଣୀଙ୍କ ପାଖରେ ବସିଲେ । ପୂଜାପାଠ ହେଲା । ଓରଫ ଜାଙ୍ଗୁର ମୁଣ୍ଡରେ ଠାକୁରାଣୀ ସିନ୍ଦୂର ଲଗାଇ ବେକରେ ଫୁଲମାଳଟିଏ ପିନ୍ଧାଇ ଦିଆଗଲା । ମାଦଳ ବାଜିଲା । ହରିବୋଲ ହୁଳହୁଳିରେ ପୂଜା ମଣ୍ଡପ ଉଚ୍ଛୁଳି ଉଠିଲା । ଓରଫ ଜାଙ୍ଗୁର ଖୁବ୍ ଜୋର୍‌ରେ ମୁଣ୍ଡକୁ ହଲାଇ ଝୁଲିଲା । ଠାକୁରାଣୀଙ୍କ ବେତ ସମସ୍ତଙ୍କ ମୁଣ୍ଡରେ ଛୁଆଁଇ ଦେଲା । ସବୁଲୋକଙ୍କ ହାତରେ ସୋରିଷ ତେଲ ଲଗାଇ ଗୋଟିଏ ଲେଖାଏଁ ଶାଳପତ୍ର ମୁଠାଇ ଧରିବାକୁ କହିଲା । ବେତ ହଲାଇ ଝୁଲି ଝୁଲି ଲୋକଙ୍କ ଚାରିପାଖରେ ବୁଲିଲା । କିଛି ସମୟ ପରେ ଜଣକୁ ଜଣ ପରୀକ୍ଷା କରିବାକୁ ଲାଗିଲା ।

ହାତରୁ ଶାଳପତ୍ର ଗୁଡ଼ିକୁ ଖୋଲି ଦେଖିଲା । ଶେଷରେ କୁନ୍ଦନ ଝିଅ ଲଛମୀର ପାଳି ପଡ଼ିଲା । କ'ଣ ଦେଖିଲା କେଜାଣି, ଲଛମୀକୁ ଦୋଷୀ ବୋଲି ନିଷ୍ପତ୍ତି ଶୁଣାଇ ଦେଲା । ଭେଣ୍ଡିଆ ବାପଟା ରୋଗରେ ବିଛଣାରେ ଗଡୁଛି । ଲଛମୀକୁ ଡାଆଣୀ ଗ୍ରାସିଛି । କଞ୍ଚାଡାଆଣୀ ଠିଆ ଠିଆ ଖାଇଯିବ । ଗାଁର ଅମଙ୍ଗଳ ହେବ । ଆଗ ତା ବାପାକୁ ମୋଡ଼ି ଖାଇବ । ତାପରେ ଗୋଟି ଗୋଟିକରି ଗାଆଁ ପଦା କରିଦେବ ।

ଏକଥା ଶୁଣି ଲଛମୀର ହଲକ ଶୁଖିଗଲା । ଭୋ' ଭୋ' କରି କାନ୍ଦିଲା, ବିକଳରେ ଚିତ୍କାର କରି କହିଲା- ନାଁ-ନାଁ, ଏସବୁ ମିଛ କଥା । ମୁଁ ଡାହାଣୀ ନୁହେଁ, ମିଛରେ ମୋତେ ଦୋଷୀ କରାଯାଇଛି । ମୋ ବାପାକୁ ମରିବାକୁ ଦେବି ନାହିଁ । ନିଶ୍ଚୟ ବଞ୍ଚାଇବି, କାନ୍ଦିକାନ୍ଦି ଘରକୁ ପଳାଇଲା ।

ସଞ୍ଜ ହେଲା, ଘରେ ଘରେ ଡିବିରି ଆଲୁଅ ଜଳି ଉଠିଲା । ମୁଖିଆ ଅର୍ଜୁନ ଅହିରିର ନିର୍ଦ୍ଦେଶରେ ଧାଙ୍ଗଡ଼ାଘରେ ସଭା ବସିଲା । କଥାପଡ଼ିଲା, ଲଛମୀ ଦେହରେ ଡାଆଣୀ ଆସିଛି, ଗାଁକୁ ଖାଇବ । ଗାଁ ପଦା ହୋଇଯିବ, ଆମେତ ସବୁ ଯିବା, ତାକୁ ରଖିବା କାହିଁକି ? ଆଗ ତାକୁ କୁଳମାତା ପାଖରେ ବଳି ଦେବା । ମାଆ ଯଦି ସୁଦୟା କରିବେ ଗାଁଟା ରହିଯିବ । ଆସନ୍ତା ଅମାବାସ୍ୟା ଦିନ ଲକ୍ଷ୍ମୀକୁ ବଳି ଦିଆଯିବ । ଏ ନିଷ୍ପତ୍ତି ଲଛମୀର ବାପା କୁନ୍ଦନକୁ ଶୁଣାଇ ଦିଆଗଲା ।

ଏକଥା ଶୁଣି କୁନ୍ଦନର ଚେତାବୁଡ଼ିଗଲା । ଲଛମୀକୁ ଚାରିଆଡ଼ ଅନ୍ଧାର ଦେଖାଗଲା । ବାପର ମୁହଁରେ ପାଣିଛାଟି ଚେତା କରାଇ କହିଲା - ବାପୁ, ତୁମେ ଯଦି ଏମିତି ଅଧୈର୍ଯ୍ୟ ହେବ, ମୁଁ ତା'ହେଲେ କ'ଣ କରିବି ? ମୋ'ରି ପାଇଁ ଯଦି ଗାଁର ଅମଙ୍ଗଳ ହେଲା - ତେବେ ମୁଁ ଗାଁର ମଙ୍ଗଳ ପାଇଁ ଜୀବନ ଦେବି । କୁଳମାତା ମୋ'ରି ରକ୍ତ ପାଇ ଯଦି ସନ୍ତୁଷ୍ଟ ହେବେ, ତାହା ଅତି

ଭଲ କଥା । ଏଥିରେ ଆମେ ଦୁଃଖ କାହିଁକି କରିବା ? ଗୋଟିଏ ଜୀବନ ବଦଳରେ ଯଦି ଗାଆଁ ଲୋକଙ୍କ ସମସ୍ତ ଜୀବନ ବଞ୍ଚିଯାଏ, ଏହାଠାରୁ ଆଉ ବଡ଼କଥା ରହିଲା କେଉଁଠି ? ମୁଁ ଜୀବନ ହାରିବି ସତ, କିନ୍ତୁ ବାପୁ, ମୋ ମନ କହୁଛି- ଏସବୁ ମିଛ କଥା । ଚାଲ ଆମେ ଏ ଗାଆଁ ଛାଡ଼ି ଚାଲିଯିବା । ମୁଁ ତୁମକୁ ନିଶ୍ଚୟ ଭଲ କରିବି ।

ରହ ମା, ଗାଁ ଛାଡ଼ି ଚାଲିଯିବା ଭଲ କଥା ନୁହେଁ । ମୁଁ ଓରଫ ଜାଙ୍ଗୁରକୁ ପଚାରି ବୁଝେ ସେ ଯଦି କିଛି ପାଉଣା ନେଇ ବାଟ ବତାଇଦେବ ।

ସେଇ କିଟିକିଟିଆ ଅନ୍ଧାର ରାତିରେ ବାଡ଼ିଟିକୁ ଧରି କୁନ୍ଦନ ଚାଲିଲା ଓରଫ ଗୁଣିଆ ଘରକୁ ବଞ୍ଚିବାର ଅଶାନେଇ । କବାଟ ବାଡ଼େଇ ଡ଼ାକିଲା ଓରଫକୁ, କୁନ୍ଦନ ଆସିବା ଜାଣିପାରି ମନେ ମନେ ଭାରି ଖୁସି ହୋଇଗଲା ଓରଫ । ଏତେଦିନେ ଗୋଟିଏ ଭଲ ଶିକାର ମିଳିଛି । ଛାଡ଼ିବ କାହିଁକି ? କବାଟ ଖୋଲି ପାଖରେ ବସିଲା । ସେ ତ ଆଗରୁ ସବୁ ଜାଣିଛି । ଏସବୁ ତା'ର ଫିସାଦି । କିଛି ସମୟ ବସି ଭାବିଲା । ମନେ ମନେ ଗୁଣୁଗୁଣୁ ହେଲା, କହିଲା - ବୁଝିଲୁ କୁନ୍ଦନ, ଏଥିରେ ମୋର ବା ଚାରା କ'ଣ ? ଏ ସବୁ ମାଆଙ୍କ ଆଦେଶ । ତୁ ଯଦି ଠାକୁରାଣୀ ମାଆଙ୍କୁ ସନ୍ତୁଷ୍ଟ କରି ପାରିବୁ ! ନହେଲେ ଗାଁ ଲୋକେ ଛାଡ଼ିବେ ନାହିଁ । ଆସନ୍ତା ଅମାବାସ୍ୟା ଦିନ ସବୁ ଫଇସଲା ହେଇଯିବ । ହଁ ଜାଣିଥା । ସେଦିନ ଆଉ ନିସ୍ତାର ପାଇବୁ ନାହିଁ । ଯଦି ଝିଅକୁ ଦେଖିବାର ଆଶା ଥାଏ ତେବେ...

ତେବେ କ'ଣ କରିବାକୁ ହେବ ସଫା ସଫା କହନ୍ତୁ, ମୁଁ କରିବି । ତୁ ତ ଜାଣୁ, ମୋର ଲକ୍ଷ୍ମୀ ପ୍ରତିମା ଭଳି ଝିଅଟା କ'ଣ ଡ଼ାଆଣୀ ହେଇପାରେ !!

ସେଥିକୁ ମୁଁ କ'ଣ କରିବି ! ମାଆ ଯାହା କହିଲେ, ମୁଁ ସେଇଆ କହିଲି । ତୁ ପାରିବୁ ମାଆଙ୍କୁ ଖୁସି କରି ? ବଡ଼ସିଂହାର ବେଶ କରି

ପାରିବୁ ? ଗାଁ ଲୋକଙ୍କୁ ଭୋଜି ଦେଇ ପାରିବୁ !! ଆଉ ଗାଁଆକୁ ସଲାମୀ ଦେଇ ପାରିବୁ !!!

କହୁନୁ, ସବୁ ମିଶି କେତେ ଖର୍ଚ୍ଚ ହେବ ? - ତେବେ ସବୁ ମିଶି ହଜାରେ ସରିକି ଲାଗି ପାରେ । ଏ ସବୁକୁ କ'ଣ ତୁ ସହି ପାରିବୁ ?

ଓରଫର କଥାଶୁଣି କୁନ୍ଦନର ଆଖି ତାଳୁରେ ଖୋସି ହୋଇ-ଗଲା । ହଜାରେ କିଏ, ଆଉ କୁନ୍ଦନ କିଏ ? ନିରାଶ ମନରେ ଘରକୁ ଫେରି ଆସିଲା ।

ଗାଁ ମୁଖିଆ ଅର୍ଜୁନ ଅହିରିର ଜୁଆନ ଭଉଣୀ କାଞ୍ଚନୀ ଆଉ ବିଶୁ ଅହିରିର ଝିଅ ବଂଜଲି ମଧ୍ୟ ଏଇ ଡ଼ାଆଣୀ ବୋଲି ଅଭିଯୁକ୍ତ କରାଯାଇ କୁଳମାତା ବେଦୀ ମଣ୍ଡପରେ ଅତି ନିର୍ମମ ଭାବରେ ହତ୍ୟା କରାଯାଇଛି । ଆଉ ଏଇ କୁନ୍ଦନ ଅହିରିର ନକ୍ଷ୍ମୀ ସେ ବା ସେଥିରୁ ବାଦ ଯିବ କାହିଁକି ?

ଭାବି ଭାବି ଦୁଃଖଶୋକ ଭରା ମନ ବିକଳି ଉଠିଲା, ରହିଲେ ମରିବ। ଝିଅମାନେ କ'ଣ ଡ଼ାଆଣୀ ? ମୋ ଝିଅ ନକ୍ଷ୍ମୀ କେବେହେଲେ ଡ଼ାଆଣୀ ହୋଇପାରେ ନା ? ଘରର ମୋହ ଛାଡ଼ିବି । ଗାଁର ମୋହ ଛାଡ଼ିବି । ଅତି ଆପଣାର ବଣମୁଲକର ମୋହ ଛାଡ଼ି ସବୁଦିନ ପାଇଁ ଚାଲିଯିବି । ଡ଼େରି ହେଲେ ଅଘଟଣ ଘଟିବ । ଗାଁ ଲୋକେ ଜାଣିଲେ ମୋ ନକ୍ଷ୍ମୀ ପ୍ରତିମାକୁ ନେଇ ହାଣିପକାଇବେ । ଲଛମୀକୁ କହି ଲୁଗାପଟା କେଇଖଣ୍ଡିକୁ ଗଣ୍ଡିଲି ବାନ୍ଧିଲା । କିଟିକିଟିଆ ଅନ୍ଧାର ରାତିରେ ଗାଁ ଛାଡ଼ି ଚାଲିଗଲା । ସକାଳ ହେଲା ବେଳକୁ ଅନେକ ଦୂରକୁ ଚାଲିଯାଇଥିଲେ ସେମାନେ ।

ଜଗା ମାଷ୍ଟ୍ରେ । ବୟସ ପଚିଶି କି ଛବିଶି ହେବ । ବି.ଏ ପାଶ କରି କିରାଣୀ ଚାକିରିଟିଏ ଯୋଗାଣ ବିଭାଗରେ କରିଥିଲେ । ଦୁର୍ନୀତିରେ ଭରା ଏଇ ବିଭାଗ, ଏ କାମ ତାଙ୍କ ମନରେ ଆନନ୍ଦ ଦେଇ ପାରିଲା ନାହିଁ । ମିଛ ସତ କାମ କରିବାକୁ ବିବେକ ବାଧା ଦେଲା ।

"ମାନବ ସେବାହିଁ ଜୀବନର ପରମ ଧର୍ମ ।" ସମାଜରେ ଶୋଷିତ ନିଷ୍ପେଷିତ ଲୋକଙ୍କୁ ସାହା ହେବାର ପ୍ରେରଣା, ମନରେ ଜାଗିଲା । ଦଳିତ ଅବହେଳିତ ଲୋକଙ୍କ ସେବାରେ ନିଜକୁ ସାମିଲ କରିବାର ଶପଥ ନେଲେ ।

"ଜାଣିବା ହିଁ ଜ୍ଞାନ ।" ଜାଣି ନ ପାରିବାଟା ଅଜ୍ଞାନ । ଅଜ୍ଞାନ ହିଁ ଅନ୍ଧକାର । ଅନ୍ଧାରକୁ ଚାହିଁଲେ ଯେମିତି ସବୁ ଥାଇ ମଧ କିଛି ଦେଖି ହୁଏ ନାହିଁ ସେମିତି ଏ ଦୁନିଆରେ ସବୁ ଥାଇ ମଧ ଅଜ୍ଞାନ କିଛି ଜାଣି ପାରେ ନାହିଁ । ଏଇ ଅଜ୍ଞାନ ଅନ୍ଧକାରକୁ ଦୂର କରିବାକୁ ହେଲେ ଶିକ୍ଷା ନିହାତି ଆବଶ୍ୟକ ।

ଜଗନ୍ନାଥ ବାବୁ ସରକାରୀ ଚାକିରିକୁ ଛାଡ଼ିଲେ । ନିଜକୁ ଶିକ୍ଷକ ଭାବରେ ଦୁଇବର୍ଷ ତାଲିମ ନେଇ ଜଗା ମାଷ୍ଟ୍ରେ ହୋଇଗଲେ ।

ବଣ ପାହାଡ଼ ଘେରା କନ୍ଧମାଳ ଅଞ୍ଚଳ । ଯେଉଁଠି ଶିକ୍ଷା ନାହିଁ କି ସ୍ୱାସ୍ଥ୍ୟ ନାହିଁ । ସଫା ସୁତୁରା ଲୋକଙ୍କୁ ଦେଖିଲେ ଭୟରେ ଲୁଚନ୍ତି । ସେହିଭଳି ଅଞ୍ଚଳଟିଏ ନିଜର କର୍ମକ୍ଷେତ୍ରଟିଏ ବାଛିବେ । ପିଲାଦିନେ ପଢ଼ିଥିବା 'ଶୁକ୍ରର ସାହସ'ର ହସ ହସ ଛବି ଏବେ ବି ଜଳ ଜଳ ହେଇ ଦେଖାଯାଉଛି । ଏତେ ସାହସ, ଏତେ ବୀରତ୍ୱ ଥାଇ ମଧ ସେମାନେ ଶିକ୍ଷାରୁ ବଞ୍ଚିତ । ଅନ୍ଧବିଶ୍ୱାସ ପୂରା ଗାଁଟାକୁ ଜାବୁଡ଼ି ଧରିଛି । ତାକୁ ତଡ଼ିବାକୁ ହେବ । ଶିକ୍ଷାର ଆଲୋକରେ ଝଲମଲ ଦିଶିବ ଏଇ ମୁଲକ ।

ପୂରୁବ ଆକାଶରେ ନୂଆ ସୂରୁଜ ଉଙ୍କି ମାରିଲାଣି । ପାହାନ୍ତିଆ ତାରାଟା ପଶ୍ଚିମରେ ଜୁକୁଜୁକୁ ହେଇ ଦିଶୁଛି । ନୂଆ ମନ ନେଇ ଚାଲିଛନ୍ତି ମାଷ୍ଟ୍ରେ କେତେ କ'ଣ ଭାବନା ନେଇ ।

ସେଇ ବାଟ ଦେଇ ଆସୁଥିଲେ କୁନ୍ଦନ ଆଉ ଲକ୍ଷ୍ମୀ । କଙ୍କାଳସାର ଶରୀର । କାଲିଠାରୁ ଖିଆପିଆ ନାହିଁ । କୁନ୍ଦନ ଆଉ ଚାଲିପାରିଲା ନାହିଁ ।

ତଳେ କଚାଡ଼ି ହୋଇ ପଡ଼ିଗଲା । ଲଛମୀ ମୁଣ୍ଡରୁ ଗଣ୍ଠିଲିଟିକୁ ତଳେ ପକାଇଦେଇ ବାପାକୁ ଉଠାଇଲା । ପାରିଲା ନାହିଁ । ଖାଲି କାନ୍ଦିଲା ।

ମାଷ୍ଟ୍ରେଙ୍କ ନଜର ପଡ଼ିଲା । ଆଉ ଯିବେ କେମିତି, ନିଜେ ଆସି କୁନ୍ଦନକୁ ଉଠାଇ ବସାଇଲେ । ଝିଅଟି ଠାରୁ ସବୁ କଥା ପଚାରି ବୁଝିଲେ । ନିଜ ବ୍ୟାଗରୁ କଦଳୀ ଓ ବିସ୍କୁଟରୁ କିଛି ଖାଇବାକୁ ଦେଲେ । କୁନ୍ଦନକୁ କାନ୍ଧରେ ଧରି ଡ଼ାକ୍ତରଖାନାକୁ ନେଇଗଲେ ।

ସେବା ସଦନ । ଘରୋଇ ଅନୁଷ୍ଠାନ । ପ୍ରତିଷ୍ଠାତ୍ରୀ ଜଣେ ମହିୟସୀ ମହିଳା । ଦଳିତ, ଅବହେଳିତମାନଙ୍କୁ ସେବା କରିବା ଜୀବନର ବ୍ରତ । ଚିର ରୁଗ୍‌ଣ ଲୋକଙ୍କୁ ଚିକିତ୍ସା କରି ସେବା କ୍ଷେତ୍ରରେ ସୁନାମଧନ୍ୟା । ସେବା ସଦନର କର୍ମଚାରୀମାନେ ବେଶ୍ ଉଦାରମନା । ଡ଼ାକ୍ତରଙ୍କୁ ଅନୁରୋଧ କରି ମାଷ୍ଟ୍ରେ ଏଇ ଅସହାୟ ଲୋକଟିର ଚିକିତ୍ସା କରିବାକୁ କହିଲେ । ଦୟାକରି ଏଇ ଲୋକଟିକୁ ଔଷଧପତ୍ର ଦେଇଥାନ୍ତୁ । ମୁଁ ଆସି ସେମାନଙ୍କ ସମସ୍ତ ଖର୍ଚ୍ଚ ଦେଇଦେବି ।

ଧୀରେ ଧୀରେ କୁନ୍ଦନ ଔଷଧପତ୍ର ଖାଇବାରୁ ଭଲ ହୋଇଗଲା । ଲଛମୀ ପାହାଡ଼ି ଝିଅଟିଏ ହେଲେ ମଧ୍ୟ ବୁଦ୍ଧିମତୀ । ମନରେ ସାହସ ବାନ୍ଧି ଉମାଦେବୀଙ୍କୁ ସବୁକଥା କହିଲା । ନିଜର ଦୁଃଖ ଜଣାଇଲା । ଏଇଭଳି କେତେ କେତେ ପରିତ୍ୟକ୍ତା, ଅସହାୟା ଝିଅ ବୋହୁ ରହି ଅନୁଷ୍ଠାନର ସେବା କାର୍ଯ୍ୟରେ ଲାଗିଛନ୍ତି ।

''ଜନ ସେବାହିଁ ଜନାର୍ଦ୍ଦନ ସେବା,'' ଯାହାଙ୍କ ଜୀବନର ମୂଳମନ୍ତ୍ର । ଯିଏ ନିଜ ଜୀବନକୁ ଏଇ ଦଳିତ ନିଷ୍ପେସିତ ଲୋକଙ୍କ ସେବାରେ ଉତ୍ସର୍ଗ କରିଛନ୍ତି, ସିଏ କେମିତି ଏଇ ଅନ୍ଧବିଶ୍ୱାସୀ ଲୋକଙ୍କ ନିଷ୍ପତ୍ତିକୁ ମାନି-ନେବେ ? ଲଛମୀକୁ ସାନ୍ତ୍ୱନା ଦେଇ କହିଲେ, ଠିକ୍ ଅଛି । ତୋର ଯଦି ଇଚ୍ଛା

ହେଉଛି ଏଇଠି ରହି ନିଜକୁ ସେବିକା ଭାବରେ ତାଲିମ କରିନେ । ଦିନ ଆସିବ- ତୁ ନିଜେ ତୋ'ରି ଗାଁର ଗୁଣିଆ ହେଇ ସଭିଙ୍କୁ ଝାଡ଼ିବୁ ।

ବେଳ ରତରତ ସରିକି ମାଷ୍ଟ୍ରେ ପହଞ୍ଚିଲେ ସୁକାନଡ଼ିହିପୁର ଗାଁରେ । ଗାଁ ମୁଖିଆ ଅର୍ଜୁନ ଅହିରିକୁ ଭେଟିଲେ । ପାଖରେ ଆଉ ଦି ତିନି ଜଣ ଲୋକ ଥିଲେ । ବିଛଣାପତ୍ର ଦାଣ୍ଡ ପିଣ୍ଡାରେ ରଖିଲେ । କହିଲେ- ମଉସା, ମୁଁ ଆସିଛି ତୁମ ଗାଁରେ ସ୍କୁଲଟିଏ ଖୋଲିବି । ପିଲାମାନେ ପାଠ ପଢ଼ିବେ । ଭଲ ମନ୍ଦ କଥା ସବୁ ଜାଣିବେ ।

ସେ ଇସ୍‌କୁଲ ଫିସ୍‌କୁଲ କଥା କୁହନ୍ତୁ ନାହିଁ ବାବୁ । ପାଠ ଶାଠ ଆମର କ'ଣ ହେବ । ଗାଁ ତ ରହିବ ନାହିଁ ! ଆଉ ପାଠ ପଢ଼ିବେ !

କାହିଁକି, କ'ଣ ଏମିତି ହୋଇଛି ଯେ ଗାଁ ରହିବ ନାହିଁ ?

ସେ କଥା ପଚାରନ୍ତୁ ନାହିଁ ବାବୁ । ଆମ କୁଳମାତା ରୋଷ କରିଛନ୍ତି । ଆଉ ଯାହା ଉପରେ ଆଖି ପକାଇଥିଲେ ସେ ଗଲା ରାତିଠାରୁ କୁଆଡ଼େ ଯାଇଛି ଯେ ଆମେ ସବୁ ଖୋଜି ଖୋଜି ନୟାନ୍ତ ହେଲୁଣି । ସେ ରହିଥିଲେ କାଳେ ଗାଁଟା ରହିଯାଇ ଥାଆନ୍ତା ! ଆମ ଉପରେ ଚଡ଼କ ପଡ଼ିଛି । ତୁମେ ବାବୁ ଫେରିଯାଅ । ତୁମେ କାହିଁକି ଆମପାଇଁ ଦଣ୍ଡ ପାଇବ ?

ହଉ ସେକଥା ପରେ ବୁଝିବା । ଖାଲି ଆଜି ରାତିଟା ମୋତେ ରହିବାକୁ ଟିକେ ଜାଗା କରିଦିଅ । ମୁଁ ସେକଥା ବୁଝିବି । ଯେତେବେଳେ ମୁଁ ଏଠାକୁ ଆସିଛି, ଫେରିଯିବି କେମିତି ? ହଉ, ଆସିଛ ଯେତେବେଳେ ଆଜି ରାତିଟା ସେଇ ଧାଙ୍ଗଡ଼ା ଘରେ ରହିଯା । ହେଲେ ବାବୁ ଆମେ କହୁଛୁ- କାଲି ଯେମିତି ନିଜ ଘରକୁ ଫେରିଯିବ । ନହେଲେ ଆମ ସହିତ ମରିବ କାହିଁକି ?

ଢେ଼ଙ୍ଗୁରିଆ ! ଯା ବାବୁଙ୍କୁ ସେଇ ଧାଙ୍ଗଡ଼ା ଘରେ ଛାଡ଼ି ଆସିବୁ ଆଉ ଆଜି ରାତିରେ ତୁ ତାଙ୍କ ପାଖରେ ରହିବୁ । ଆମ ଘରେ ତମେ ବାବୁ ଆସି ଖାଇଦେଇ ଯିବ ।

ଧାଙ୍ଗଡ଼ା ଘର ଝାଟି ବାଡ଼ ପୋତା କାନ୍ଥ । ବଡ଼ ଘରଟିଏ । ପୂନେଇ ପରବରେ ଗାଁର ପୁଅଝିଅମାନେ ଆସି ନାଚନ୍ତି । ଯାହା ମନକୁ ଯିଏ ପାଇଲା, ମନରେ ମନ ମିଶିଲା, ତାକୁ ସିଏ ନିଜ ଗେରସ୍ତ ବୋଲି ମଣିଲା । ଜୀବନସାଥୀ ଭାବରେ ଗ୍ରହଣ କଲା । ଏ ସବୁ କଥା ଢେ଼ଙ୍ଗୁରିଆ ଅହିରି ଠାରୁ ମାଷ୍ଟ୍ରେ ଶୁଣିଲେ ।

ଗାଁ ଲୋକମାନେ କାହିଁକି ଏମିତି ଭାବ ସବୁ ଧରି ବସିଛନ୍ତି ଜାଣିବା ପାଇଁ ଢେ଼ଙ୍ଗୁରିଆକୁ ମାଷ୍ଟର ବାବୁ ପଚାରିଲେ ।

କ'ଣ କହିବି ବାବୁ ! ଆମେ ସବୁ ଲୋକ କୁଳମାତାଙ୍କୁ ମା' ବୋଲି ଜାଣୁ । ତାଙ୍କ ଆଦେଶକୁ ଏଡ଼ାଇବା ସାହସ କାହାର ନାହିଁ । ଏଇ ଯେଉଁ ଗୁଣିଆ ଓରଫ ଜାଙ୍ଗୁରଟା ଅଛି, ସେଟା ଜମା ଭଲ ଲୋକ ନୁହେଁ । ସେ ସବୁ ଲୋକଙ୍କଠୁ ଘୁଷ୍ ନେଇ ନିଜେ ଚଳିଯାଉଛି । ଖାଲି ବସି ବସି ମଜା ମାରୁଛି ।

କାହିଁକି ତା'ହେଲେ ତା କଥା ମାନୁଛ ?

ମାନିବୁ ନାହିଁ ଆଜ୍ଞା ? ସେ ପରା କୁଳମାତାଙ୍କ ଆଦେଶ ବୋଲି କହୁଛି ? ମାଆଙ୍କ କଥା ନମାନିଲେ ଆମ କୁଳ ବୁଡ଼ିଯିବ ବାବୁ !

ଆଚ୍ଛା, ଢେ଼ଙ୍ଗୁରୁ । ତୁମ ମାଆ କ'ଣ କେବେ ତୁମର ଖରାପ କଥା ଭାବିବ ? ତୁମର କୁଳକୁ ବୁଡ଼ାଇଦେବ ? ତମେ ଥରେ ଭଲକରି ଭାବିଲ ?

ନା ତ ବାବୁ । ସେ ପରା ଆମରି ମାଆ । ମାଆ ହୋଇ ପୁଅକୁ କେବେହେଲେ ଅମଙ୍ଗଳ କରିବ ନାହିଁ । ତେବେ ମାଆ ଏମିତି ଆଦେଶ ଦେଉଛନ୍ତି କାହିଁକି ?

ସେସବୁ ମିଛ କଥା । ମାଆଙ୍କ ନାଆଁରେ ତୁମକୁ ସେ ଠକୁଛି । ଗାଁର ଅଘଟଣ ଘଟାଉଛି । ମୋତେ ଥରେ ତା'ପାଖକୁ ନେବ । ମୁଁ ତା'ର ଫନ୍ଦି ଫିକର ସବୁ ପଦାରେ ପକାଇଦେବି ।

ସେ କଥା କୁହନା ବାବୁ, ତା'ରି କଥାରେ ପଡ଼ି କେତେ ଜୁଆନ ଝିଅଙ୍କୁ ମାଆଙ୍କ ପାଖରେ ବଳି ଦେଇଛନ୍ତି । ସେକଥା ଭାବିଲେ ନା ଛାତି ଖାଲି ବିଦାରି ହେଇଯାଉଛି ।

ହଉ, ରାତି ବେଶୀ ହେଲାଣି । ଶୋଇପଡ଼, ମୁଁ ସବୁ ବ୍ୟବସ୍ଥା କରିଦେବି । ତୁମେ ସବୁ ପାଠ ପଢ଼ିଲେ ସବୁକଥା ଜାଣିପାରିବ ।

ରାତି ନପାହୁଣୁ ଢେଙ୍ଗୁରିଆ ଉଠିଲା । ସିଧା ସିଧା କୁଳମାତାଙ୍କୁ ମୁଣ୍ଡିଆ ମାରି ଅର୍ଜୁନ ଅହିରି ଘରେ ହାଜର । ତାଙ୍କୁ ଡ଼ାକି ସବୁ କଥା କହିଲା ।

ଅର୍ଜୁନ ଅହିରି ସବୁ ଶୁଣିଲା । କଥାଗୁଡ଼ାକ ମନକୁ ପାଇଲା । ଆସିଛନ୍ତି ଯେବେ ରହିଯାଆନ୍ତୁ । ସେଇ ଧାଙ୍ଗଡ଼ା ଘରେ ଯାହା କରିବାର କରନ୍ତୁ । ହଇରାଣ ହେଲେ ବଳେ ଛାଡ଼ି ପଳେଇବେ ! ଆମେ କାହିଁକି ତଡ଼ିଦେବା ।

ସେଇ ଧାଙ୍ଗଡ଼ା ଘରେ ସ୍କୁଲ ଖୋଲିଲା । ଆଖପାଖ ଗାଁରୁ ପିଲାମାନେ ପଢ଼ିବାକୁ ଆସିଲେ । ମାଷ୍ଟ୍ରେ ଆଉ ଏକା ନୁହନ୍ତି । ରାତିରେ କେତେଲୋକ ଆସି ପାଠ ପଢୁଛନ୍ତି । ରାତିରେ ଶୋଉଛନ୍ତି । ଭଲମନ୍ଦ କଥା ଶୁଣି ଶିଖୁଛନ୍ତି ।

ଦିନେ ରାତିରେ ସମସ୍ତେ ଶୋଇଛନ୍ତି । ଅର୍ଜୁନ ଅହିରି ଆସି ମାଷ୍ଟ୍ରେଙ୍କୁ ଡ଼ାକିଲା । ତା'ରି ଦଶ ବରଷର ଝିଅଟା ଝାଡ଼ା ବାନ୍ତିରେ ଘର ଭସାଇ-

ଦେଉଛି । ଆଖି ତରାଟି ଚାହୁଁଛି । ବେକ ମୋଡ଼ିଦେଉଛି । ସେଇ ଡ଼ାହାଣୀ ବୋଧେ ନଜର ଦେଇଛି ।

ତୁମେ ଆଦୌ ବ୍ୟସ୍ତ ହୁଅନା । ଚାଲ ମୁଁ ଯାଉଛି । ତାକୁ ଖାଲି ଚାଉଳଧୁଆ ପାଣିରେ କିଛି ଲୁଣ ମିଶାଇ ପିଇବାକୁ ଦିଅ । ତାକୁ ଡାକ୍ତରଙ୍କ ପାଖକୁ ନେଇଯିବା, ଚିକିତ୍ସା କଲେ ନିଶ୍ଚୟ ଭଲ ହେଇଯିବ ।

ଡାକ୍ତରଙ୍କ ପାଖକୁ ନେବାକୁ ପହିଲେ କେତେଜଣ ଅମଙ୍ଗ ହେଉଥିଲେ । କୁଳମାତାଙ୍କୁ ଛାଡ଼ି ଗୁଣିଆକୁ ନ ପଚାରି ଯିବା ଭଲ ନୁହେଁ । ତେବେ କ'ଣ କରାଯିବ ? କାହାକଥା କରିବା ? ଓରଫ ଜାଙ୍ଗୁର ନା ମାଷ୍ଟର ବାବୁଙ୍କର ?

ଡେଙ୍ଗୁରିଆ କାହା କଥା ଶୁଣିଲା ନାହିଁ । ଝିଅଟିକୁ କାନ୍ଧରେ ପକାଇ ମାଷ୍ଟର ବାବୁଙ୍କ ସାଙ୍ଗରେ ଚାଲିଲା ଡାକ୍ତରଖାନାକୁ । ସଙ୍ଗେ ସଙ୍ଗେ ଚିକିତ୍ସା ଆରମ୍ଭ ହେଲା । ସାଲାଇନ୍ ଲାଗିଲା । ଔଷଧ ଇଞ୍ଜେକ୍ସନ୍ ଦିଆଗଲା । ଧୀରେ ଧୀରେ ଝିଅଟି ଆଖି ଖୋଲିଲା ।

ଏଣେ ଓରଫ ଜାଙ୍ଗୁର ଭାରି ରାଗିଗଲା ମୁଖିଆ ଉପରେ । ମୁଁ ଥାଉ ଥାଉ ମୋତେ ମାନିଲ ନାହିଁ ! ତମେ କୁଳମାତାଙ୍କୁ ଅବଜ୍ଞା କଲ, ନିଶ୍ଚୟ ଫଳ ପାଇବ । ସେଇ ଲୋକଟା କଥାରେ ପଡ଼ି ଗାଁର ଅମଙ୍ଗଳ ଘଟାଇଲ ।

ଏତିକିବେଳେ ଡେଙ୍ଗୁରିଆ ଆସି ମୁଖିଆଙ୍କୁ କହିଲା - ଏଠି କ'ଣ କରୁଛ ? ଶୀଘ୍ର ଆସ ଦେଖିବ ତୁମ ଝିଅ ପରା ଭଲ ହୋଇଗଲାଣି । ତୁମକୁ ଖୋଜୁଛି । ଆସ ।

ଡେଙ୍ଗୁରିଆ ପଛେପଛେ ସମସ୍ତେ ଡାକ୍ତରଖାନାକୁ ଗଲେ । ଝିଅକୁ ଭଲ ହୋଇଯିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ତେବେ କ'ଣ ଓରଫ

ଜାଙ୍ଗୁରର କଥା ସବୁ ମିଛ ? ସେ କ'ଣ ସତରେ ଆମକୁ ଠକୁଛି ?? ସେ କ'ଣ ଜଣେ ଭଣ୍ଡ, ପ୍ରତାରକ ???

ଦୁଇ ଦିନ ରହି ଝିଅଟି ପୂରା ଭଲ ହୋଇଗଲା, ଘରକୁ ଫେରି ଆସିଲା । ମାଷ୍ଟ୍ରଙ୍କ କହିବା ଅନୁସାରେ ଲକ୍ଷ୍ମୀ ଗାଁ ଲୋକଙ୍କୁ ଦେଖା ଦେଲା-ନାହିଁ । ଲକ୍ଷ୍ମୀ ଏଠାରେ ଅଛି, ଏକଥା ଗାଁ ଲୋକେ ଜାଣି ପାରିଲେ ନାହିଁ ।

ସେବା-ସଦନରେ ଦୁଇବର୍ଷ ରହିଲା । ନିଜକୁ ସେବିକା ଭାବରେ ତାଲିମ କରିନେଲା । ରୋଗୀମାନଙ୍କର ସେବା କରି ଅନୁଷ୍ଠାନର ଅତି ପ୍ରିୟପାତ୍ରୀ ହୋଇଗଲା, କୁନ୍ଦନ ମଧ୍ୟ ଏଠାରେ ରହି ଦିନରାତି କିଛି ନକିଛି କାମରେ ଲାଗିପଡ଼ିଲା । ଡାକ୍ତରଖାନାର କର୍ମଚାରୀମାନଙ୍କଠାରୁ ଆରମ୍ଭ କରି ରୋଗୀମାନଙ୍କ ପର୍ଯ୍ୟନ୍ତ ଲଛମୀର କାମରେ ସନ୍ତୁଷ୍ଟ । ସେ ଆଉ ସେଇ ବଣ ପାହାଡ଼ର ଡାଆଣୀ ଲଛମୀ ନୁହେଁ, ସାକ୍ଷାତ ମାଆ ଅନ୍ନପୂର୍ଣ୍ଣା ପାଲଟିଯାଇଛି ।

ବଣ ପାହାଡ଼ର ଝିଅ ଲଛମୀ, ବଣ ତା'ର ଘର । ବଣ ତା'ର ମୁଲକ । ମନେପଡ଼ିଲା ନଈର କୁଲୁକୁଲୁ ସୁର ପଥର ଉପରେ ଢେଉକାଟି ତଳେ କଚାଡ଼ିହୋଇ ପଡୁଥିବାର ଦୃଶ୍ୟ । ମନେପଡ଼ିଲା ଗାଁ ଲୋକଙ୍କ କଥା । ସତେ ଯେମିତି ସେଇ ବଣର ପଶୁପକ୍ଷୀମାନେ ତାକୁ ହାତଠାରି ଡାକୁଛନ୍ତି ଫେରିଯିବାକୁ । ଯିବ, ନିଶ୍ଚୟ ଫେରିଯିବ ଅତି ଆପଣାର ମୁଲକକୁ । ମାଷ୍ଟ୍ରଙ୍କୁ ଦେଖି ମନକଥା ସବୁ ଖୋଲି କହିଲା ।

ଧାଙ୍ଗଡ଼ା ଘରେ ସେବା ଶିବିର ପଡ଼ିବ । ଆଖପାଖ ଗାଁରେ ଏ ଖବର ଜଣାଇଦିଆଗଲା । ମାଗଣାରେ ଔଷଧ ଦିଆଯିବ । ଆଉ ଲୋକମାନେ ରୋଗ ଭୋଗିବେ ନାହିଁ, ଯେତେ କହିଲେ ମଧ୍ୟ ମୁଖିଆ ଅର୍ଜୁନ ଓ ଡେଙ୍ଗୁରିଆ ଛଡ଼ା ଆଉ କେହି ଆସିଲେ ନାହିଁ । ଗାଡ଼ି ଅଟକିଲା । ଡାକ୍ତରଙ୍କ ସମେତ

ସମସ୍ତେ ଓହ୍ଲାଇଲେ । ଧାଙ୍ଗଡ଼ା ଘରେ ସମସ୍ତେ ରହିଲେ । ଗାଁ ଲୋକମାନେ କେହି ଆସି ନଥିବାରୁ ଦୁଃଖରେ ଭାଙ୍ଗିପଡ଼ିଲା ଲଛମୀ ।

ଡାକ୍ତର ବାବୁ ଲଛମୀକୁ କହିଲେ, ଏ ବେଳରେ ତୁମେ ଭାଙ୍ଗିପଡ଼ିଲେ ଚଳିବ ନାହିଁ । ଲୋକମାନେ ଜାଣିନାହାନ୍ତି । ରୋଗୀମାନେ ଦେଖି ଡରି-ଯାଉଛନ୍ତି । ଘରେ ଲୁଚି ରହିଛନ୍ତି । ତୁମେ ତ ଏଇ ଗାଁର ଝିଅ । ପରିଚୟ ଦିଅ । ସେମାନଙ୍କୁ ଆଣି ଚିକିତ୍ସା କରାଅ । ସେମାନେ ଭଲ ହେଲେ ତୁମକୁ କଲ୍ୟାଣ କରିବେ । ଡାଆଣୀ ଦୋଷ ତୁମର କଟିଯିବ ।

ଘର ଘର ବୁଲି ନିଜର ପରିଚୟ ଦେଲା । ତୁମେସବୁ ଡାକ୍ତର ବାବୁଙ୍କୁ ଦେଖି ଭୟ କରନା । ଆସ ମୋ ସହିତ ଆସ । ସେ ତୁମକୁ ଔଷଧ ଦେବେ । ରୋଗ ଭଲ ହୋଇଯିବ । ଦେଖ, ମୋ ବାପାଙ୍କ ଅବସ୍ଥା କେମିତି ହୋଇଯାଇଥିଲା । ସେ ବର୍ତ୍ତମାନ ଆଗଭଳି ରୋଗୀ ନୁହନ୍ତି । ସୁସ୍ଥ ସବଳ ହୋଇଯାଇଛନ୍ତି । ତୁମେ ମଧ୍ୟ ଭଲ ହୋଇଯିବ । ନିଜ ନିଜର ଧନ୍ଦା ସବୁ କରି ପାରିବ ।

ସତ କହୁଛୁ ଝିଅ, ଆମେ ସବୁ ଭଲ ହୋଇଯିବୁ ! ହଁ, ଆସୁନା, ଆସ ! ନିଜ ଆଖିରେ ମୋ ବାପାଙ୍କୁ ଦେଖି ସବୁ ଜାଣି ପାରିବ । ଆମ ଗାଁର ଅବସ୍ଥା ଏମିତି କାହିଁକି ହେଲା, ସେସବୁ ଡ଼ାକ୍ତର ବାବୁ କହିବେ, ଶୁଣିବ । ତାଙ୍କୁ ଦେଖି ଡ଼ାହାଣୀ ପରା ଡ଼ରି ଚାଲିଗଲାଣି ।

ଲଛମୀର ଏ ରୂପ ଦେଖି ଆଶ୍ଚର୍ଯ୍ୟ ହେଇଗଲେ । ସତେ ଯେମିତି ସରଗର ପରୀ । ସମସ୍ତେ ରାଜି ହେଲେ । ଧାଙ୍ଗଡ଼ା ଘରକୁ ଆସିଲେ । ଡ଼ାକ୍ତର ବାବୁ ରୋଗ ଦେଖି ସେମାନଙ୍କୁ ଔଷଧପତ୍ର ଦେଲେ ।

ମାଷ୍ଟରବାବୁ ଗାଁ ଲୋକଙ୍କୁ ବୁଝାଇ କହିଲେ- ତୁମେ ସବୁ ଓରଫ କଥାରେ ବିଶ୍ୱାସ କରି ତୁମ ଅବସ୍ଥା ଏମିତି ହୋଇଛି । ମଣିଷ ଦେହରେ

ଡ଼ାଆଣୀ କେବେ ଆସେ ନାହିଁ କି ଭୂତ ପ୍ରେତ ଗ୍ରାସେ ନାହିଁ । ଏସବୁ ତୁମର 'ଅନ୍ଧବିଶ୍ୱାସ' । ତୁମେ ଖାଲି ଭଣ୍ଡ ଗୁଣିଆ କଥାରେ ପଡ଼ି ତାକୁ ଖୋରାକ ଦେଇଛ । ମଦ, ମାଂସ, ଟଙ୍କା ପଇସା ଦେଇଛ । କହି ପାରିବ ସେ କେତେ ଜଣଙ୍କୁ ଭଲ କରି ପାରିଛି ? ନାଁ, ବରଂ ତୁମରି ପୁଅଝିଅ, ମାଆମାନଙ୍କୁ ଡ଼ାଆଣୀ ସଜାଇ ମରଣ ମୁହଁକୁ ଠେଲିଦେଇଛି । କିଏ କହିପାରିବ ? ଜଣକୁ ମାତ୍ର ସେ ବଞ୍ଚାଇ ପାରିଛି ??

ତୁମେ ସବୁ ତା'ରି କଥାରେ ପଡ଼ି ଏଇ କୁନ୍ଦନର ଝିଅ ଲକ୍ଷ୍ମୀକୁ ଡ଼ାଆଣୀ ବୋଲି ଚିହ୍ନଟ କରିଥିଲ ମାରିବା ପାଇଁ - ସେଇ ଆଜି ଆସିଛି ତୁମକୁ ମରଣ ମୁହଁରୁ ବଞ୍ଚାଇବା ଲାଗି । ସେ ହିଁ କେବଳ ତୁମକୁ ରକ୍ଷା କରିପାରିବ । ସେ ବିଷୟରେ ଡ଼ାକ୍ତର ବାବୁ ଆସିଛନ୍ତି ବୁଝାଇଦେବେ ।

ଡ଼ାକ୍ତରବାବୁ କହିଲେ, - ତମେ ସବୁ ଏଇ ଯେଉଁ ନଈର ଜଳ ପିଉଛ, ସେଇ ଜଳ ଦୂଷିତ ହୋଇଯାଇଛି । ତୁମ ପାଖରେ ଆଜି ଡ଼ାଆଣୀ ହେଇ ତୁମକୁ ଗିଳିପକାଇଛି । ତେଣୁ ତୁମର ଅବସ୍ଥା ଖରାପ ହୋଇ ଯାଇଛି । ଆଜିଠାରୁ ତୁମେ ସେଇ ଜଳକୁ ଛାଣି ସିଝାଇ ପିଇବ । ମୁଁ ତୁମକୁ ଯେଉଁ ଔଷଧପତ୍ର ଦେଇଛି ତାହା ଠିକ୍ ଭାବରେ ଖାଇବ । ତା'ହେଲେ ତୁମ ଦେହରୁ ଭୂତ ହେଉ କି ଡ଼ାଆଣୀ ହେଉ ଛାଡ଼ି ଚାଲିଯିବ ।

ଲକ୍ଷ୍ମୀ ଭଳି ଅନେକ ଝିଅ ବୋହୂଙ୍କୁ ଡ଼ାଆଣୀ ଭାବି ହତ୍ୟା କରିଛ । ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ଯେଉଁ ମହା ଅପରାଧ କରିଛ, ତାକୁ ଦୂର କରିବା ପାଇଁ ମୁଁ ଆଜି ତୁମ ପାଖରେ ଲକ୍ଷ୍ମୀକୁ ଆଣି ଆସିଛି ଗୁଣିଆ ହୋଇ ତୁମକୁ ଝାଡ଼ିବ । ଚିକିତ୍ସା କରିବ । ତୁମ ମନର ଭୂତକୁ ଛଡ଼ାଇଦେବ । ସେ ଆଜି ଡ଼ାଆଣୀ ନୁହେଁ, ତୁମରି ଗାଁ ର ଝିଅ । ତୁମରି ପାଖରେ ରହିବ । ତୁମରି ଡ଼ାଆଣୀ ଲଛମୀ ଆଜି ଲକ୍ଷ୍ମୀ ପାଲଟିଛି । ଏବେ ତାକୁ ନିଅ । ମୁଁ

ସରକାରଙ୍କୁ ଜଣାଇଛି ପିଇବା ପାଣି ପାଇଁ ନଳକୂପ ବସାହେବ । ସେଇ ପାଣି ପିଇବ । ଆଉ ନଈର ଦୂଷିତ ଜଳ ପିଇ ରୋଗ ଭୋଗିବ ନାହିଁ ।

ଲୋକମାନେ ଏକଥା ଶୁଣି ବଡ଼ ଆଚମ୍ୱିତ ହେଲେ । ଗୁଣିଆ ଓରଫ ଜାଙ୍ଗୁର ବସି ଏକଥା ଶୁଣୁଥିଲା । ମଝିରେ କେତେବେଳେ ଖସି ପଳାଇଗଲା । ଖୋଜା ପଡ଼ିଲା ଗୁଣିଆକୁ । ଏତିକିବେଳେ ଜଣେ ଆସି କହିଲା, ସେ କ'ଣ ଆଉ ଅଛି ! ପେଡ଼ି ପୁଟୁଳା ବାନ୍ଧି ଗାଁ ଛାଡ଼ି ଚାଲିଯାଇଛି । ମୁଁ ପରା ବାଟରେ ଦେଖିଲି - ସେ ଅତରଛିଆ ହୋଇ ଯାଉଛି । ଯେତେ ଡ଼ାକିଲି ଶୁଣିଲା ନାହିଁ ।

ସମସ୍ତେ ଠୋ ଠୋ ହୋଇ ହସି ଉଠିଲେ । ଲକ୍ଷ୍ମୀର ବୁଦ୍ଧିକୁ ପ୍ରଶଂସା କଲେ । ଗୁଣିଆ କଥାରେ ପଡ଼ି ଯେଉଁ ଭୁଲ୍ କରୁଥିଲେ ସେଥିପାଇଁ ଅନୁତାପ କଲେ । ଅର୍ଜୁନ ଅହିରି ଉଠିଯାଇ ଲକ୍ଷ୍ମୀର ହାତ ଧରି କହିଲା - ମୁଁ ନଜାଣିପାରି ଏଭଳି ନିଶାପ ଶୁଣାଇଥିଲି । ମୋର ଭୁଲ୍ ହୋଇଛି । ତୁ ମୋତେ କ୍ଷମା କରିଦେ ।

ଲକ୍ଷ୍ମୀ ଅର୍ଜୁନର ଛାତିରେ ମୁଣ୍ଡରଖି କହିଲା - ଏ କଣ କହୁଛ ମଉସା ! ମୁଁ ପରା ତୁମରି ଝିଅ । ସେକଥା ସବୁ ମନରୁ ପୋଛିଦିଅ । ଦେଖିବ, ଆମ ଗାଁ ପୁଣି ହସି ଉଠିବ । ସେତେବେଳକୁ ସଞ୍ଜ ନଇଁ ନଇଁ ଆସୁଥିଲା । ଚଉଁରାମୂଳରେ ସଞ୍ଜବତୀ ଦେଖୁଥିଲା ଦିପିଦିପି ଆଲୁଅରେ ।





ବୋଉ, ମୁଁ ଆଉ ପାଠ ପଢ଼ିବାକୁ ଯିବିନାହିଁ । ଦେଖୁନୁ, ମୋ ମୁଣ୍ଡକୁ କେମିତି ମନୋଜ ସ୍ଲେଟରେ ବାଡ଼େଇ ଫଟେଇଦେଇଛି, ମାଷ୍ଟ୍ରେ ମୋ ମୁଣ୍ଡରେ ପଟି ବାନ୍ଧିଦେବାରୁ ରକ୍ତ ବନ୍ଦ ହୋଇଗଲା । ନହେଲେ ମୋ ଅବସ୍ଥା ଯେ କ'ଣ ହୋଇଥାନ୍ତା... ! -

କାହିଁକି ? ତୁ ତା'ର କ'ଣ କଲୁ କି ?

ନାହିଁ ବୋଉ, ମୁଁ ତା'ର କିଛି ଦୋଷ କରିନାହିଁ । ମୁଁ ଅଙ୍କ କରୁଥିଲି, ସେ ମୋ'ଠାରୁ ଦେଖିବ ବୋଲି କହିଲା । ମୁଁ ନ ଦେଖେଇବାରୁ ମୋତେ ମାରିଲା । ପୁଣି କ'ଣ ଧମକ ଦେଇଛି ଜାଣିଛୁ ? ବାଟରେ ଏକୁଟିଆ ପାଇଲେ ମାରି ମାରି ମାରିଦେବ । ମୁଁ କୁଆଡ଼େ ଡ଼କାୟତର ପୁଅ । ଏ କଥା କ'ଣ ସତ ? ବୋଉ ! କହ ବୋଉ ! ମୁଁ କ'ଣ ତେବେ ଜଣେ ଡ଼ାକୁର ପୁଅ...

ବୋଉ ଏକଥା ଶୁଣି କାନ୍ଦିପକେଇଲେ । ବୋଉ ଆଖିରେ ଲୁହ ଦେଖି ସତ୍ୟ କହିଲା- ତୁ, କାନ୍ଦେନା ବୋଉ, ମୁଁ ଆଉ ପଢ଼ିବାକୁ ଯିବି-ନାହିଁ । ବାପାଙ୍କୁ ଖୋଜିବାକୁ ଯିବି । ତାଙ୍କୁ ସେ ଅବାଟରୁ ଫେରେଇ ଆଣିବି । କାନ୍ଦିପକାଇଲା ।

ତୁ କ'ଣ ଏ କାମ ପାରିବୁ ବାପ !

ନିଶ୍ଚୟ ପାରିବ । ତା ନାଁ ପରା ସତ୍ୟ । ଏକଥା କହି ଘର ଭିତରକୁ ପଶିଆସିଲେ ଜଗା ମାଷ୍ଟ୍ରେ । ଖଣ୍ଡିଆ ହୋଇଯାଇଥିବା ମୁଣ୍ଡକୁ ପରୀକ୍ଷା କରି ଦେଖିଲେ । ବ୍ୟସ୍ତ ନହେବା ପାଇଁ ସତ୍ୟର ମାଆକୁ କହିଲେ ।

ଜମିଦାର ପୁଅଟା ଏଡ଼େ ଦୁଷ୍ଟ ! ପାଠ ତ ଭଲ ପଢୁନି । ଫାଜିଲାମିରେ ବଳିଯାଇଛି । ଏମିତି ଦଣ୍ଡ ଦେଇଛି ଯେ, ସେ କେବେହେଲେ ଆଉ ଦୁଷ୍ଟାମି କରିବନାହିଁ ।

ଏଁ, ଏ କ'ଣ କଲ ମାଷ୍ଟ୍ରେ ! ସେ ଯେ, ବଡ଼ ଲୋକର ପୁଅ ! ଆପଣ ତ ନୂଆ ଆସିଛନ୍ତି । ଜାଣିନାହାନ୍ତି ଜମିଦାର କଥା ।

ଜମିଦାର ଆଖିରେ ଥରେ ନିଆଁ ଜଳିଲେ କେତେ ଯେ ପୋଡ଼ି ପାଉଁଶ ହୋଇଯିବ, ତା ହିସାବ କେହି ଦେଇ ପାରିବେ ନାହିଁ । ତାଙ୍କରି ଦାଉରେ କେତେ ଗରିବ ନିଃସହାୟ ଲୋକ ଗାଁ ଛାଡ଼ି ଚାଲିଗଲେଣି । ଏବେ ଆଖି ପଡ଼ିଛି ଆମ୍ଭ ଉପରେ ।

ସେ ତୁମର କି କ୍ଷତି କରିପାରିବ ? ସେ ସମୟ ଚାଲିଯାଇଛି । ସମସ୍ତେ ଆଇନ୍ ଜାଣିଗଲେଣି । ଆଉ ତା'ର ନାଲିଆଖିର ଧମକ ଚଳିବ ନାହିଁ । କହିଲେ, ମାଷ୍ଟର ବାବୁ - ସେକଥା କୁହନ୍ତୁ ନାହିଁ ବାବୁ ! ମୋ ସୁଖର ସଂସାର ଦିନେ ବୈକୁଣ୍ଠପୁର ଭଳି ହସି ଉଠୁଥିଲା । ମନରେ କେତେ ଆଶା ବାନ୍ଧିଥିଲୁ

ସୁଖର ସଉଧ ଗଢ଼ିବୁ । ହେଲେ ସେ ଆଶା ପାଣିଫୋଟକା ପରି ମିଳେଇ-ଗଲା । ସେ ସବୁ ନ କହିଲେ ଭଲ । ଯେତେହେଲେ ଆମେ ଦୁଃଖି ଲୋକ । ସେ ତ ଘର ଛାଡ଼ି କୁଆଡ଼େ ଗଲେ । ପାଠରୁ କ'ଣ ମିଳିବ ବାବୁ ! ସେଇ ଜମିଦାରର ଗାଈ, ଛେଳି ରଖି ଦିନ କଟାଇବୁ ।

ଏହା ଶୁଣି ମାଷ୍ଟର ବାବୁ କହିଲେ- ସେ କ'ଣ ଆଦୌ ଆସୁ ନାହାନ୍ତି ?

ହଁ, ଥରେ ମାତ୍ର ଆସିଥିଲେ । ପୁଣି ନିସ୍ତବ୍ଧ ରାତିରେ । ତାଙ୍କ ଚେହେରା ଦେଖି ମୁଁ ବେହୋସ ହୋଇଯାଇଥିଲି । ଚେତା ଆସିଲାପରେ ମୋତେ କହିଲେ- ବ୍ୟସ୍ତ ହୁଅନା ସୁମୀ । ଆମ ଦୁଃଖର ରାତି ପାହି ପାହି ଆସୁଛି । ମୁଁ ଜମିଦାରର ବିଷଦାନ୍ତଟା ନ ଉପାଡ଼ିବା ଯାଏ ଘରକୁ ଫେରିବି ନାହିଁ ।

ଆଚ୍ଛା, କହି ପାରିବ, ସତ୍ୟର ବାପା ଏ ଅବାଟରେ କାହିଁକି ଗଲେ ?

ରଣଯନ୍ତା କାଳ ହେଲା- କ'ଣ କହିବି ବାବୁ; ସେ ତ ବହୁ ଗହନର କଥା । କିଏ ଜାଣିଥିଲା ଆମ ଖୁସିର ସଂସାରରେ ଏଇ ଜମିଦାରଟା ନିଆଁ ଲଗେଇଦେବ ।

ମାତ୍ର ଶହେଟଙ୍କା କରଜକୁ ବରଷକ ପରେ ହଜାରେ ଟଙ୍କା ସୁଝିଲୁ । ଜମିଦାର ହସି ହସି କହିଲେ - ଆରେ ମଙ୍ଗୁଲୁ ସବୁ ତ ଦେଲୁ, ଆଉ ମୂଳଟା ରହିଗଲା ଯେ- ସୁବିଧା ଦେଖି ଦେଇଦେବୁ ବୁଝିଲୁ- ।

ପାଖରେ ଗୁମାସ୍ତାଟା ଚଷମା ଟେକି କହିଲା- ଆ, ଆ ମୋ ପାଖକୁ ଆ ମଙ୍ଗୁ, ମୁଁ ବୁଝାଇଦେବି । ନେଇଥିଲୁ ଶହେ, ହେଲା ଶହେ, ସୁଧ ଶହେ ଆଉ ଦେଲୁ ଶହେ, ଏମିତି ହେଲା ଉଁ ଉଁ (ଖାତାଟାକୁ ଦେଖି) ଗାଏ ଚାରିଶ । ଏଁ ପୁଣି ବରଷେ କାଳ । ଆଜ୍ଞା ବାରଶ ହେଲା । କ'ଣ କହୁଛନ୍ତି ଆଉ ଶହେ ରହିଲା ବୋଲି ?

ଛାଡ଼ - ମଙ୍ଗୁଲୁ ତ ଆମ ନିଜ ଲୋକ । ଦି' ପଇସା ରୋଜଗାର କରୁଛି । ଭଲ, ଭଲ ବାପା, ତା ଖାତାରୁ ସବୁ କାଟିଦିଅ ଗୁମାସ୍ତା ବାବୁ, ଖାଲି ଶହେ ରହିଲା ବୋଲି ଲେଖିଦିଅ ।

ତଳିପା ରକ୍ତ ତାଲୁକୁ ଉଠିଗଲା ମଙ୍ଗୁଲୁର । ଭାବୁଥିଲା ଜମିଦାରର ତଣ୍ଟିଟାକୁ ଫୁଟାଇ ରକ୍ତ ପିଇଯାଇଥାନ୍ତା । କିନ୍ତୁ ପାରିଲା ନାହିଁ । ଜମିଦାରକୁ ଘେରି କେଇଟା ଡ଼ାହଳ ଘୂରି ବୁଲୁଥିଲେ । ହତାଶ ମନରେ ଫେରି ଆସିଲା ଘରକୁ ।

ସେତିକିରେ ଜମିଦାରର ମନସାଧ ମେଣ୍ଟିଲା ନାହିଁ ମାଷ୍ଟର ବାବୁ । ଯେଉଁଦିନ ଜମିଦାରର ହଳ ଆମ ତିନ୍ଟି ମାଣିଆ ଚକରେ ବୁଲିଲା - ସେହିଦିନ ପ୍ରତିବାଦ କରି ବିଫଳ ହେଲେ । ଗାଁର ଲୋକମାନେ ସହି ପାରିଲେ ନାହିଁ ସିନା, ହେଲେ କେହି ଭୟରେ ତୁଣ୍ଡ ଖୋଲିଲେ ନାହିଁ । ଶେଷରେ ମୋର ଶଶୁର ବୁଢ଼ା ହାୟ ହାୟ ହୋଇ ଜୀବନ ହରାଇଲେ । ଭଲ ଭାବରେ ବୁଝିପାରିଲେ ଜମିଦାରର କାରସାଦି । ଯେତେ ଶୁଝିଲେ ମଧ୍ୟ ଆମ କରଜ ଟଙ୍କା ଶୁଝିବ ନାହିଁ । ଯେଉଁଦିନ ଯାଏ ଜମିଦାର ହାତରେ ସେହି ନାଲିଆ ଖାତାଟା ଥିବ, ସେତେଦିନ ପର୍ଯ୍ୟନ୍ତ ସେହି ଋଣଯନ୍ତାରୁ ମୁକୁଳି ପାରିବେ ନାହିଁ । ମୋର ଶଶୁରଙ୍କର ଜଳନ୍ତା ଯୁଇକୁ ଛୁଇଁ ଶପଥ କରି ଯାଇଛନ୍ତି ଯେ, ଆଉ ଆମ ଘରକୁ ଫେରି ନାହାନ୍ତି ।

ମାଷ୍ଟର ବାବୁ ସବୁ ଶୁଣିସାରି କହିଲେ- ଯାହା ତ ହେବାର ହୋଇ-ଯାଇଛି । ମୁଁ ଥରେ ଚେଷ୍ଟା କରି ଦେଖେ । କହି ପାରିବ ସେ କେଉଁଠି ରହୁଛନ୍ତି ?

ଠିକ୍ ଭାବରେ ଜାଣେ ନାହିଁ । ତେବେ ଏଇ ଦୂରରେ ଯେଉଁ ପାହାଡ଼ଟା ଦେଖାଯାଉଛି, ସେଇଠି କେଉଁ ଆଡ୍‌ଡାରେ ରହୁଛନ୍ତି । ଆଉ କେତେଜଣ ସାଙ୍ଗ ୍ୋଙ୍କ ସହିତ ମିଶି ଅଛନ୍ତି । ଶୁଣୁଛି- ଭୟରେ କେହି ସେ ବାଟେ ଯାଆନ୍ତି ନାହିଁ ।

ଆଚ୍ଛା ଠିକ୍ ହେଲା, 'ମୁଁ ଯିବି । ମୋ ସହିତ ସତ୍ୟ ମଧ ଯିବ । ଭଗବାନଙ୍କ ଦୟା ହେଲେ ମମତାର ଡୋରିରେ ସତ୍ୟ ଯଦି ବାପାଙ୍କୁ ମୈଳ ଅବାଟରୁ ଟାଣି ଆଣି ପାରିବ !

# ସର୍ଦ୍ଦାର ଆଡ୍‌ଡାରେ ମାଷ୍ଟର ବାବୁ

ରବିବାର । ଛୁଟିଦିନ । ଅପରାହ୍ନର ନାଲିଆ କିରଣ ବିଞ୍ଚିହୋଇ ପଡ଼ିଥିଲା ଧରଣୀ କୋଳରେ । ସୂରୁଯ ଦେବତା ହାତ ଧରି ବାଟ କଢ଼ାଇ ନେଲେ ସତେ ଯେମିତି । ସତ୍ୟ ଆଉ ମାଷ୍ଟର ବାବୁ ଚାଲିଲେ ସେଇ ଜଙ୍ଗଲ ଆଡ଼େ । ପହଞ୍ଚିଲା ବେଳକୁ ସଞ୍ଜହୋଇ ଆସିଲା । ସଞ୍ଜୁଆ ତାରାଟା ଆଖି ମିଟି ମିଟି କରି ଦିଶୁଥିଲା ।

ମାଷ୍ଟ୍ରେଙ୍କୁ ଦେଖି ଜଣେ ଲୋକ କହିଲା- ଅନ୍ଧାର ମାଡ଼ି ଆସୁଛି । ଆପଣ ଏ ଛୁଆଟାକୁ ସାଙ୍ଗରେ ଧରି ସେଆଡ଼େ କାହିଁକି ଯାଉଛନ୍ତି ? ଆପଣ କ'ଣ ଜାଣି ନାହାନ୍ତି, ସେଇ ଜଙ୍ଗଲରେ ଡାକୁ ମଙ୍ଗଲ ସର୍ଦ୍ଦାର ଆଡ୍‌ଡା କରିଛି। ହାବୁଡ଼ରେ ପଡ଼ିଲେ ଗଣ୍ଡିରୁ ମୁଣ୍ଡଟାକୁ ଅଲଗା କରିଦେବ । ଆଖପାଖରେ ତା'ର ଚାରମାନେ ବୁଲୁଛନ୍ତି । ଦେଖିଲେ ବାନ୍ଧି ନେଇଯିବେ । ଫେରିଯାନ୍ତୁ । ଶୀଘ୍ର ଫେରିଯାନ୍ତୁ ।

ମାଷ୍ଟ୍ରେ ହସି ହସି କହିଲେ, ''ମୁଁ ପରା ତାକୁ ଖୋଜି ଖୋଜି ଏତେ ବାଟ ଆସିଛି । ମରଣକୁ ଡରି ଫେରିଯିବି । ମୋ ଜୀବନ ପଛେ ଯାଉ, ମୁଁ ଦେଖା ନକରି ଫେରୁନାହିଁ । ମୋ ଜୀବନ ବଦଳରେ ଯଦି ମଙ୍ଗଲର ଜୀବନ ଚରିତ୍ର ବଦଳିଯାଏ, ତେବେ ମୁଁ ନିଜକୁ ଧନ୍ୟ ମନେ କରିବି ।''

- ଗୋଟିଏ କଥା କହିବି । ରଖିବେ !

କ'ଣ କହିବେ ? ଶୀଘ୍ର କହନ୍ତୁ । ଡ଼େରି ହୋଇଗଲାଣି ।

- ଆପଣ ତ ଜଙ୍ଗଲରେ ବାଟ ଦେଖିଛନ୍ତି । ଦୟାକରି ମୋ ସହିତ ଆସି ଆଡ୍‌ଡ଼ାକୁ ବାଟ ଦେଖେଇ ଦିଅନ୍ତେ !

ଆରେ ବାପ୍‌ରେ ବାପ୍ । ମୋ ମୁଣ୍ଡଟା କାନ୍ଧରେ ରହିବ ତ ? ସେମାନେ ଘୋରି ନୃଶଂସ । ଦେଖିଲା ମାତ୍ରେ ଗୁଳି ନହେଲେ ଛୁରୀରେ ଖାଲି ପଚ୍ ପାଚ୍ କରି କାଟିପକାଇବେ । ମୋତେ ଭାରି କାଟିବ । ଶେଷରେ ମୋ ଜୀବନଟା ନେବାକୁ ଆପଣଙ୍କ ଇଚ୍ଛା ! କ୍ଷମା କରନ୍ତୁ ଆଜ୍ଞା ! ମୁଁ ଆଦୌ ଆପଣଙ୍କୁ ସାହାଯ୍ୟ କରି ପାରୁନାହିଁ । ମୋ ବାଟରେ ମୁଁ ଯାଉଛି । ଆପଣଙ୍କ ବାଟରେ ଆପଣ ଯାଆନ୍ତୁ ।

ଲୋକଟି ଚାଲିଗଲା ପରେ ଉତ୍ସାହ ନ ହରାଇ ଆଗକୁ ଚାଲିଲେ । କିଛିବାଟ ଗଲାପରେ ଦୂରରୁ ଠକଡ୍ ଠକଡ୍ ଶବ୍ଦ ଶୁଭିଲା । ମାଷ୍ଟ୍ରେ ଭାବିଲେ ଘୋଡ଼ାରେ ବୋଧହୁଏ କିଏ ଏଆଡ଼େ ଆସୁଛି । ଗୁପ୍ତଚର ନୁହେଁ ତ ?

ହଠାତ୍ ତାଙ୍କ ପାଖରେ ଜଣେ କଳା ପୋଷାକଧାରୀ ଲୋକ ଘୋଡ଼ାରୁ ଓହ୍ଲାଇପଡ଼ିଲା । ଧମକେଇ କହିଲା- ଆଉ ପାଦେ ଆଗେଇଲେ ମୁଣ୍ଡରୁ ଗଣ୍ଡିଟାକୁ ଅଲଗା କରିଦେବି । ଏ- ତୋ ସାଙ୍ଗରେ ସେ ଛୁଆଟା କିଏ ? ଏ ରାତିଟାରେ ଜଙ୍ଗଲ ଆଡ଼େ କାହିଁକି ଯାଉଛୁ ? ତୁ କ'ଣ ଜାଣିନୁ - ଏଇ ଜଙ୍ଗଲରେ ଡାକୁ ମଙ୍ଗଲ ସର୍ଦ୍ଦାର ଆଡ଼ାରେ ରହୁଛି ?

ଡରିନଯାଇ ମାଷ୍ଟ୍ରେ କହିଲେ, ମୁଁ ତ ସେହି ମଙ୍ଗଲ ସର୍ଦ୍ଦାରଙ୍କୁ ଦେଖା କରିବାକୁ ଆସିଛି । ମହାଶୟ ! ଆପଣ ଦୟାକରି ମୋତେ ଟିକେ ତାଙ୍କରି ପାଖକୁ ନେଇ ଚାଲନ୍ତୁ । ଦେଖା ସରିଲା ପରେ ମୋତେ ପଛେ ମାରିପାର ।

ମାଷ୍ଟ୍ରେଙ୍କୁ ଦେଖି ଲୋକଟା ମନରେ ଦୟା ଆସିଲା । କିଛି ଜରୁରୀ କାମ ଥିବାର ଅନୁମାନ କରି କହିଲା- ଠିକ୍ ଅଛି । ତା ପଛେ ପଛେ ଯିବାକୁ ନିର୍ଦ୍ଦେଶ ଦେଇ ଘୋଡ଼ାରେ ବସି ଚାଲିଲା । ମାଷ୍ଟ୍ରେଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖିଥାଏ । ଖାଲି ହାତରେ ତ ଆସିଛି । ଭୟ କଣ ? ଦେଖାଯାଉ । ମାଷ୍ଟର ବାବୁ ସତ୍ୟକୁ ସାଙ୍ଗରେ ଧରି ପଛେ ପଛେ ଜଙ୍ଗଲ ଭିତରେ ପଶିଲେ ।

## ସର୍ଦ୍ଦାର ଆଖିରେ ଲୁହ

ଅନ୍ଧାର ମାଡ଼ି ମାଡ଼ି ଆସୁଛି । ଜଙ୍ଗଲର ହିଂସ୍ରଜନ୍ତୁଙ୍କ ବିକଟାଳ ଶବ୍ଦରେ ଦେହ ଭୟରେ ଥରିଉଠୁଛି । ପାହାଡ଼ ଗୁହା ନିକଟରେ ଲୋକଟି ଘୋଡ଼ାରୁ ଓହ୍ଲାଇପଡ଼ିଲା । ଅସ୍ପଷ୍ଟ ସ୍ୱରରେ ଏକ ଇଙ୍ଗିତ ଦେଲା । ସେଇ ଘନ ଅନ୍ଧାର ଭିତରୁ କେତେଜଣ କଳା ପୋଷାକଧାରୀ ଡକାୟତ ଜଗା ମାଷ୍ଟ୍ରେଙ୍କୁ ଘେରିଗଲେ । ସମସ୍ତଙ୍କ ହାତରେ ଗୋଟିଏ ଲେଖାଏଁ ବନ୍ଧୁକ । ବନ୍ଧୁକ ଅଗରେ ଛୁରୀ । ଜଗା ମାଷ୍ଟ୍ରେଙ୍କ ଦେହରେ ବନ୍ଧୁକର ଛୁରୀକୁ ଚାରିପଟୁ ଲଗାଇ ଧରିଲେ । ପିଲାଟି ଭୟରେ କାନ୍ଦି ଉଠିଲା । ଜଣେ ପିଲାଟିକୁ ଧରିନେଇ ଧମକ ଦେଇ କହିଲା- । ତୁ କିଏ ? ଶୀଘ୍ର କହ ଏଠାକୁ କାହିଁକି ଆସିଛୁ ? ତତେ କିଏ ପଠେଇଛି ?

ପିଲାଟି କାନ୍ଦି କାନ୍ଦି କହିଲା - ମୁଁ ବାପାଙ୍କୁ ଦେଖାକରିବାକୁ ଆସିଛି । ମଙ୍ଗଲ ହେଉଛନ୍ତି ମୋ' ବାପା, ମୁଁ ଶୁଣୁଛି ସେ କୁଆଡ଼େ ଡ଼ାକୁ ହୋଇଛନ୍ତି ?

ଟିକିଏ ଦୂରରେ ମଙ୍ଗଲ ସବୁ ଶୁଣୁଥିଲା । ପିଲାଟିର କଥା ଶୁଣି ଚାଲିଆସିଲା । ପିଲାଟିକୁ କୋଳକୁ ଉଠାଇ ନେଇ ଜାବୁଡ଼ି ଧରିଲା । ବୁକୁ ତଳର ଉଗ୍ର ନିଷ୍ଠୁରତା ଲିଭି ଲିଭି ଆସିଲା । ପୁତ୍ରସ୍ନେହର ବାରି, ବୁକୁରେ

ଜଳୁଥିବା ନିଆଁକୁ ଲିଭାଇଦେଲା । ଠିକ୍ ଯେମିତି ଜଳୁଥିବା ନିଆଁରେ ପାଣି ପଡ଼ିଲା ଭଳି ସର୍ଦ୍ଦାର ଆଖିରୁ ଧାର ଧାର ହୋଇ ଲୁହ ଝରିଲା । ସମସ୍ତେ କାଠ ପରି ଚାହିଁ ରହିଥିଲେ ବାପ ପୁଅର ମିଳନକୁ । ଡ଼ାକୁର ହୃଦୟରେ କ'ଣ ସ୍ନେହ ନାହିଁ ? ମମତା ନାହିଁ ? ଅଛି, ସବୁ ଅଛି । ତେବେ ଆଜି ତାକୁ ଏଇ ବେଶ ସଜାଇଛି କିଏ ? ତା'ର ହସର ସଂସାରକୁ ଜାଳିପୋଡ଼ି ଛାରଖାର କରିଛି କିଏ ? କିଛିକ୍ଷଣ ନିରବତା ପରେ ପୁଅକୁ ମଙ୍ଗଳ କହିଲା- ସେ ବାବୁ କିଏ ?



ସତ୍ୟ ବାପାଙ୍କୁ କହିଲା - ସେ ଆମ ମାଷ୍ଟ୍ରେ, ଜଗା ମାଷ୍ଟ୍ରେ ଆମ ସ୍କୁଲକୁ ନୂଆ ଆସିଛନ୍ତି । ସେ ତୁମକୁ ଦେଖାକରିବାକୁ ଆସିଛନ୍ତି ।

ଶାନ୍ତ, ସୌମ୍ୟ, ହସହସ ମୁହଁକୁ ଦେଖି ଭକ୍ତିରେ ନମ୍ର ହୋଇଗଲା ମଙ୍ଗଳର ମନ । ବନ୍ଧୁକ ମାଷ୍ଟ୍ରଙ୍କ ଦେହରୁ ହଟାଇଦେବାକୁ ଇଙ୍ଗିତ ଦେଇ

କହିଲେ, ''ଆପଣ କାହିଁକି ଏଠାକୁ ଆସିଛନ୍ତି ? ମୋ ପାଖରେ ଆପଣଙ୍କ କାମ କଣ ? ଶୀଘ୍ର କୁହନ୍ତୁ । ଆମ ପାଖରେ ସମୟ ଖୁବ୍ କମ୍ ।''

ତୁମ ଭଳି ଜଣେ ବୀର ଥାଉ ଥାଉ ତୁମ ଗାଁ ଏପରି ଛାରଖାର ହୋଇଯିବ ! ଜମିଦାର ଅତ୍ୟାଚାରରେ ଲୋକମାନେ ଗାଁ ଛାଡ଼ି ଚାଲି-ଯିବେ ! ତୁମେ କ'ଣ ଏହା ଚାହଁ ? ଏଇ ଅନ୍ଧାର ଭିତରେ ନିଜକୁ ଲୁଚାଇ ତୁମେ କ'ଣ ଦୁନିଆକୁ ଆଲୋକ ଦେଖାଇ ପାରିବ ମଙ୍ଗଳ ? ଡ଼କାୟତ ସାଜି ଲୋକମାନଙ୍କ ଧନ ଜୀବନକୁ କ୍ଷତି କରିବା କ'ଣ ପୁରୁଷପଣିଆର କାମ ? ଆପଣମାନଙ୍କର ଯଦି ପୁରୁଷପଣିଆ ଅଛି, ତେବେ ଏ ବେଶ ଛାଡ଼ି ଆସ ସମସ୍ତେ ମିଶି ଜମିଦାର କବଳରୁ ଗାଁକୁ ରକ୍ଷାକରିବା । ଜମିଦାର ଚକ୍ରାନ୍ତକୁ ପଣ୍ଡକରି ମାଟିରେ ମିଶାଇଦେବା । ସତ୍ୟ ଭଳି ଛୋଟ ଛୋଟ ପିଲାଙ୍କ ମୁହଁରେ ହସ ଫୁଟାଇଦେବା । ଜ୍ଞାନ ଆଲୋକରେ ଜମିଦାର ଆଖିରୁ କଳା ପଟିଟାକୁ ଖୋଲିଦେବା । ଦେଖାଇଦେବା ଆମ କରାମତି ।

ଆମେ ବର୍ତ୍ତମାନ ଦସ୍ୟୁ । କେମିତି ମୁହଁ ଦେଖେଇବୁ ! ଆମକୁ ସମସ୍ତେ ଘୃଣା କରିବେ । ଆମ ସାଙ୍ଗରେ କେହି ମିଶିବେ ନାହିଁ ମାଷ୍ଟର ବାବୁ । କହିଲା ମଙ୍ଗଳ ।

ତୁମକୁ ଆଜି ଯେଉଁମାନେ ଘୃଣା କରୁଛନ୍ତି- ତୁମେ ଗାଁର ମହତ କାମରେ ସାମିଲ ହେଲେ ସେମାନେ ତୁମକୁ ଭାଇପରି କୋଳେଇ ନେବେ । କାହିଁ, ଆଗରୁ ତ ତୁମେ ଡ଼ାକୁ ସାଜି ଜନ୍ମ ନେଇ ନଥିଲ । ଆଖି ଛଳଛଳ ହୋଇଗଲା ମାଷ୍ଟ୍ରଙ୍କର । ମୋ କଥା ଟିକେ ମନରେ ଭାବ । ଇଚ୍ଛା ଥିଲେ ମୋତେ ମାରିଦେଇ ପାର, କିନ୍ତୁ ମୋ କଥା ଭଲ ଭାବରେ ଚିନ୍ତାକର । ଗାଁକୁ ସର୍ବଗ୍ରାସୀ ରାକ୍ଷସ ଜମିଦାର କବଳରୁ ରକ୍ଷାକର । ସତ୍ୟ ଭଳି ସରଳ ଶିଶୁମାନଙ୍କ ମୁହଁରେ ହସର ଜୁଆର ଖେଳାଇଦିଅ । ଘରେ ଘରେ ପୁଣି ସ୍ନେହ ମମତାର ଢେଉ ଫେରିଆସୁ ।

ଡ଼ାକୁମାନେ ମାଷ୍ଟ୍ରଙ୍କ କଥା ଶୁଣି ପଥର ପାଲଟିଯାଉଥିଲେ । ଆପଣାଛାଏଁ ବନ୍ଧୁକର ମୁନ ମାଷ୍ଟ୍ରଙ୍କ ଦେହରୁ ଘୁଞ୍ଚି ଘୁଞ୍ଚି ଯାଉଥିଲା ।

ବାପାଙ୍କ କୋଳରୁ ସତ୍ୟ ଓହ୍ଲାଇପଡ଼ିଲା । ଗୋଡ଼କୁ ଜାବୁଡ଼ି ଧରି କହିଲା- ବାପା ! ମୋ ମୁଣ୍ଡରେ ତୁମେ ହାତ ଦେଇ କୁହ - ଆଉ ତୁମେ ହାତରେ ବନ୍ଧୁକ ଧରିବ ନାହିଁ କି ଏ କଳା ପୋଷାକ ପିନ୍ଧିବ ନାହିଁ ।

ସତ୍ୟର ଶପଥ ଡ଼ାକୁମାନଙ୍କର ଲୁହା ଭଳି କଠିନ ମନକୁ ତରଳାଇଦେଲା । ଡ଼ାକୁ ମଙ୍ଗଳର ଆଖିରୁ ଧାର ଧାର ହୋଇ ଲୁହ ବହିଲା । କହିଲା- ହଁ ହଁ ମାଷ୍ଟ୍ରେ, ଆମେ ଗାଁକୁ ରକ୍ଷାକରିବୁ । ଆମେ ସବୁ ଗାଁକୁ ଯିବୁ । ସବୁଦିନ ପାଇଁ ଏ ବେଶ ଛାଡ଼ିବୁ ।

ସକାଳ ହେଲା । ସତ୍ୟକୁ ଛାଡ଼ି ମାଷ୍ଟ୍ରେ ଗାଁକୁ ଫେରି ଏକଥା ସମସ୍ତଙ୍କୁ ଜଣାଇଦେଲେ । ଥାନା ବାବୁଙ୍କ ସହିତ ପରାମର୍ଶ କରି ଜିଲ୍ଲାପାଳ ଓ ଏସ୍.ପି.ଙ୍କୁ ଓ୍ୱେୟାର୍‌ଲେସ୍‌ରେ ଏ ଖବର ଜଣାଇଦିଆଗଲା ।

## ମଙ୍ଗଳର ଆତ୍ମସମର୍ପଣ

ଆଖପାଖ ଗାଁରୁ ଲୋକଙ୍କର ଧାର ଛୁଟିଛି ସୁବର୍ଣ୍ଣପୁର ଗାଁକୁ । ସ୍କୁଲରେ ସଭା ହେବ । ସଜାସଜି ହେଇଛି । ଲାଇଟ୍ ଲାଗିଛି । ମାଇକ୍ ବାଜୁଛି । ଜିଲ୍ଲାପାଳ, ଥାନାବାବୁ ଆସି ପହଞ୍ଚିଗଲେଣି । ସାମ୍ବାଦିକମାନେ ଫଟୋ ଉଠାଇବା ପାଇଁ ଆଗରେ ବସିଛନ୍ତି । ମାଇକ୍ ଧରି ଜଗା ମାଷ୍ଟ୍ରେ ଉପସ୍ଥିତ ଲୋକଙ୍କୁ କହିଲେ- ଭାଇମାନେ, ଆଜି ବଡ଼ ସୌଭାଗ୍ୟର ଦିନ । ଏଇ ଗାଁରେ ଜିଲ୍ଲାପାଳ, ଏସ୍.ପି., ଥାନାବାବୁ ପାଦଦେଇ ପବିତ୍ର କରିଛନ୍ତି । ସେଥିପାଇଁ ଆମେ କୃତଜ୍ଞ । ବିଶେଷକରି ଆଜି ଆମେ ଏକାଠି ମିଳିଛେ । ଗାଁ ଆକାଶରୁ ''କଳାଛାଇ'' ଅପସରି ଯାଇଛି । ଜାଣି ଆପଣମାନେ ଖୁସିହେବେ - ଡାକୁ ମଙ୍ଗଳ ସର୍ଦ୍ଦାର ''ଆତ୍ମ ସମର୍ପଣ'' କରିବ । ତୁମରି

ସାଙ୍ଗରେ ଭାଇ ପରି ଭାଇ ହୋଇ ଚଳିବ । ସନ୍ତ୍ରାସବାଦରେ ଯେଉଁ ଆତଙ୍କ ସୃଷ୍ଟି କରିଥିଲା, ତାହା ଲୋପ ପାଇବ । ସମୟ ହୋଇଗଲାଣି, ବର୍ତ୍ତମାନ ସେମାନେ ଆସି ପହଞ୍ଚିଯିବେ ।

ଏତିକିବେଳେ ଚାରି ପାଞ୍ଚଜଣ କଳା ପୋଷାକଧାରୀ ଘୋଡ଼ାରେ ଚଢ଼ି ଆସିଲେ । ମୁଣ୍ଡରେ କଳାଟୋପି । ହାତରେ ବନ୍ଧୁକ । ସଭାସ୍ଥଳରେ ଓହ୍ଲାଇଲେ । ସତ୍ୟ ବାପା ମଙ୍ଗଳ ସର୍ଦ୍ଦାରର ହାତ ଧରି ମଞ୍ଚ ନିକଟକୁ ନେଇଗଲା । ଜଗା ମାଷ୍ଟ୍ରେ ମଙ୍ଗଳ ହାତଧରି ମଞ୍ଚ ଉପରକୁ ଉଠାଇ ନେଲେ । ଆଗ ମଙ୍ଗଳ ସର୍ଦ୍ଦାର ବନ୍ଧୁକଟିକୁ ଏସ୍.ପି.ଙ୍କ ହାତରେ ଅର୍ପଣ କଲା । ପିନ୍ଧିଥିବା କଳାପୋଷାକକୁ କାଢ଼ି ମଞ୍ଚ ଉପରେ ରଖି ସମସ୍ତଙ୍କୁ ନମସ୍କାର ଜଣାଇଲା । ଦୁଇହାତ ଟେକି ଉପସ୍ଥିତ ଦର୍ଶକଙ୍କୁ ଅଭିବାଦନ ଜଣାଇଲା । ଘନ ଘନ କରତାଳିରେ ସଭାସ୍ଥଳ କମ୍ପି ଉଠିଲା । ଜଣ ଜଣ କରି ଅନ୍ୟମାନେ ମାରଣାସ୍ତ୍ର ସହିତ କଳାପୋଷାକ କାଢ଼ି ସେଠାରେ ସମର୍ପଣ କଲେ ।



ଆଇନ୍ ଅନୁସାରେ ଦଣ୍ଡିତ ନକରିବା ପାଇଁ ଜିଲ୍ଲାପାଳ ଏସ୍.ପି. ମହୋଦୟଙ୍କୁ ଜଣାଇଦେଲେ । ସେମାନଙ୍କୁ ସରକାରୀ ଋଣ ମିଳିବାର ଘୋଷଣା କଲେ । ଜବାହର ରୋଜଗାର ଯୋଜନାର ଥଇଥାନ ନିମନ୍ତେ ଅର୍ଥ ସାହାଯ୍ୟ କରିବା ପାଇଁ ବି.ଡ଼ି.ଓଙ୍କୁ ନିର୍ଦ୍ଦେଶ ଦେଲେ । ସତ୍ୟକାମ ଏସବୁ କାର୍ଯ୍ୟ କରିଥିବାରୁ ତାକୁ ନିଜେ ପୁରସ୍କୃତ କରିବା ସଙ୍ଗେ ସଙ୍ଗେ ପ୍ରଶଂସା କଲେ ।

ଜମିଦାରଙ୍କୁ ଏକଥା ବଡ଼ ଅଡୁଆ ଅଡୁଆ ଲାଗିଲା । ମୋ'ରି ଗାଁରେ ଡାକୁ ମଙ୍ଗଲ ବିଜୟ ଗର୍ବରେ ଫାଟିପଡୁଛି । ମୁଁ ଜମିଦାର ହୋଇ ଆଜି ଚୋରଙ୍କ ଭଳି ଘର କୋଣରେ ଲୁଚି ରହୁଛି । କାହିଁ ? ଆଜି କେହି ତ ଜଣେ ହେଲେ ମୋ ପାଖରେ ନାହାନ୍ତି । ନା, ଏସବୁ ମୁଁ ସହି ପାରିବି ନାହିଁ । ଯିବି, ସେହି ସଭାକୁ ମୁଁ ଯିବି ।

ଜମିଦାର ବିଡ଼ାଏ କାଗଜ ଧରି ପହଞ୍ଚିଲେ । ଜଗା ମାଷ୍ଟ୍ରେ ଦେଖିପାରି ମଞ୍ଚରୁ ଆସି ଜମିଦାରଙ୍କୁ ପାଛୋଟି ନେଇ ମଞ୍ଚ ଉପରେ ବସାଇ ପରିଚୟ କରାଇଦେଲେ । ଜମିଦାର ବାବୁ ହାତଯୋଡ଼ି ସଭାରେ କହିଲେ- ମୁଁ ଅପରାଧ କରିଛି । ଅର୍ଥ ମୋହରେ ଅନ୍ଧ ହୋଇ ମୁଁ କେତେ ଲୋକଙ୍କୁ ଏଇ ଗାଁରୁ ତଡ଼ିଦେଇଛି । ମୋତେ କ୍ଷମାକର । ଜିଲ୍ଲାପାଳଙ୍କୁ କାଗଜ ବିଡ଼ାଟା ଦେଇ କହିଲେ - ବନ୍ଧୁକ ଠାରୁ ଏଇ କାଗଜ ବିଡ଼ାଟା ଭାରି ବଳୁଆ । ମୁଁ ଆଜି ପ୍ରକୃତରେ ଡାକୁ । ମୁଁ ବି ଆଜି ଆତ୍ମସମର୍ପଣ କରୁଛି ଆପଣଙ୍କ ପାଖରେ, ମୋତେ ଶାସ୍ତି ଦିଅନ୍ତୁ । ହଁ, ହଁ ମୋତେ ଶାସ୍ତି ଦିଅନ୍ତୁ । ଆଉ ଅନୁରୋଧ କରୁଛି - ଏଇ କାଗଜଗୁଡ଼ିକୁ ସମସ୍ତଙ୍କୁ ଫେରେଇ ଦିଅନ୍ତୁ ।

ମୋର ଏସବୁ ଆଉ ଲୋଡ଼ା ନାହିଁ । ଶେଷରେ କହୁଛି- ଏ ସ୍କୁଲଘର ଆଉ ଚାଳଘର ରହିବ ନାହିଁ । ଆସନ୍ତା କାଲିଠାରୁ ନୂଆ କୋଠାଘର ତିଆରି ହେବ । ମୁଁ ତା'ର ସମସ୍ତ ଖର୍ଚ୍ଚ ବହନ କରିବି । ଜିଲ୍ଲାପାଳ ମହୋଦୟ ଆଜି ତା'ର ଶୁଭ ଭିତ୍ତିପ୍ରସ୍ତର ଦେବେ । କରତାଳିରେ କମ୍ପି ଉଠିଲା ସଭାମଞ୍ଚ । ଜମିଦାରଙ୍କ ପରିବର୍ତ୍ତନ ଦର୍ଶକମାନଙ୍କ ମନରେ ଅପୂର୍ବ ଶିହରଣ ଖେଳାଇ ଦେଉଥିଲା । ଦୂରରୁ ମନ୍ଦିର ଘଣ୍ଟ ଆଳତୀ ଶୁଭ୍ରବାର୍ତ୍ତା ନେଇ ଭାସି ଭାସି ଆସୁଥିଲା ଆଉ ମଞ୍ଚ ଆଡ଼କୁ ଶୁଭ ଶଙ୍ଖର ସୁର ଛୁଟି ଚାଲୁଥିଲା ଦୂରକୁ ... ଆହୁରି ଦୂରକୁ ....






କକା ! ମା’ ପଠାଇଛନ୍ତି- ଚାଉଳ କିଲେ, ତେଲ ପଚାଶ ଦିଅ । କାଲି ପଇସା ଆଣି ଦେଇଯିବି ।

ଆଉ ମୁଁ ବାକି ଦେଇ ପାରିବି ନାହିଁ ସତ୍ୟ । ତେବେ ତୁ ଯଦି କହୁଛୁ- ଆଜିକ ଦେଉଛି । ଯେମିତି ହେଲେ କାଲି ଆସି ପଇସା ଦେଇଯିବୁ । ବୁଝିଲୁ, ବେପାର କଥା । ବାକି ପଡ଼ିଗଲେ ବେଉଷା ଚଳିବ କିପରି ? ଦେଲେ ନେଲେ ସୁନାପୁଅ ।

ବୋତଲଟା ନେଇ ତେଲ ମାପି ସତ୍ୟ ହାତକୁ ବଢ଼ାଇଦେଲା । ଦଣ୍ଡିପାଲା ଧରି ଚାଉଳ ଓଜନ କରୁଛି - ଏତିକିବେଳେ ବିରୁ ଦାଦା ବୁଲେଟ୍‌ରେ ବ୍ରେକ୍ ଚାପି ଠିଆ ହେଲା । ଆଙ୍ଗୁଠି ଅଗରେ ଚାବିର ଚେନ୍‌ଟାକୁ ଘୂରାଇବାକୁ ଲାଗିଲା ।

ବିକଟାଳ ସ୍ୱରରେ କହିଲା- ଭୋଲା, ଏ ଭୋଲା ! ତୁ ସେ ପୋଲିସ୍‌ଟାକୁ କ’ଣ କହିଲୁ କିରେ ?

ଭୋଳା ନିର୍ଭୀକ ଭାବରେ କହିଲା - ହଁ, ମୁଁ କହିଛି, ଦିନା ଚୋରି କରିଛି । ମୁଁ ନିଜ ଆଖିରେ ଦେଖିଛି ବୋଲି କହିଛି । ଆଉ କିଛି ପଚାରିବାର ଅଛି ?

ବୁଲେଟ୍ ଉପରୁ ଉଠି ଭୋଳାର ହାତଟାକୁ ଭିଡ଼ି ଆଣିଲା ବିରୁ ଦାଦା । ହାରମଜାଦା, କଣ କହିଲୁ ? ମୋ କଥା ଉପରେ ଜବାବ ! ସତ୍ୟ ହାତରୁ ବୋତଲଟା ଆଣି ଦୋକାନ ଖୁଣ୍ଟରେ ପିଟିଦେଲା । ଅଧାଭଙ୍ଗା ବୋତଲକୁ ଭୁଷିଦେଲା ଭୋଳାର ପେଟରେ । ରକ୍ତ ପିଚ୍ ପିଚ୍ ବୋହିଗଲା ଭୋଳାର ଦେହସାରା, କଚାଡ଼ି ହୋଇ ପଡ଼ିଗଲା ସେ ଦୋକାନ ଦାଣ୍ଡରେ । ଛଟପଟ ହୋଇ ଗଡ଼ିଗଲା ଦାଣ୍ଡସାରା । କିଛି ସମୟ ପରେ ଛଟପଟ ହୋଇ ନିସ୍ତେଜ ହୋଇ ପଡ଼ି ରହିଲା ଭୋଳାର ରକ୍ତାକ୍ତ ଶରୀରଟା । ମରିଗଲା ବୋଧେ ଭୋଳା !

ବୁଲେଟ୍ ଷ୍ଟାର୍ଟ କରି ଚାଲିଗଲା ବିରୁ ଦାଦା । ଭଟ ଭଟ ହୋଇ ଧୂଆଁ ବାହାରୁଥିଲା ସାଇଲେନ୍ସର ପାଇପ୍‌ରୁ ।

ଶଙ୍କରା ଦୋକାନୀର ହାତଟା ଅଟକିଯାଇଥିଲା ଅଧା ଓଜନକରା ଦଣ୍ଡିଟା ଉପରେ । ଚାଉଳଭରା ପଲାଟା ଦୋହଲୁଥିଲା ଖାଲି ଦୋହଲୁଥିଲା ଦୋକାନୀ ବୁଢ଼ା ହାତରେ । ବିରୁ ଦାଦା ଚାଲିଗଲା ପରେ ଦଣ୍ଡିଟାକୁ ଫୋପାଡ଼ି ଦେଇ ଦୋକାନ ବନ୍ଦ କରି ଚାଲିଗଲା । ଆଖପାଖ ପଡ଼ିଶା ଘରର ଟାଟି କବାଟ ପଡ଼ିଗଲା । ମର୍ଡ଼ର ଖବର ଚାରିଆଡ଼େ ଖେଳିଗଲା ।

ଗାଁର ହୋମ୍‌ଗାର୍ଡ଼ ଥାନାରେ ଖବର ଦେଲା ପୋଲିସ ଆସିଲେ । ତଦନ୍ତ ହେଲା । ହେଲେ ବିରୁ ଦାଦା ବିରୁଦ୍ଧରେ କେହି ଜଣେ ହେଲେ ସାକ୍ଷୀ ଦେବାକୁ ଆଗେଇ ଆସିଲେ ନାହିଁ ।

ପୋଲିସ୍ ଆସିବା ଖବର ପାଇ ସତ୍ୟ ଆସି ପହଞ୍ଚି କହିଲା- ସାର୍, ଭୋଳି ମଉସାଙ୍କୁ ବିରୁ ଦାଦା ମାରିଛି । ତୁମେ କେମିତି ଜାଣିଲ ? ସେ ପରା ମୋ ହାତରୁ ବୋତଲଟା ନେଇ ଏଇ ଖୁଣ୍ଟରେ ଭାଙ୍ଗିଦେଲା ଆଉ ମଉସାଙ୍କ ପେଟରେ ଭୂଷିଦେଲା । ଦେଖୁନାହାନ୍ତି ସେଇ ଭଙ୍ଗା କାଚଗୁଡ଼ା କେମିତି ଏଠାରେ ପଡ଼ିଛି ! ବିରୁ ଦାଦା ଭୟରେ ଏମାନେ କେହି ସତକଥା କହୁ-ନାହାନ୍ତି । ତୁ ନିଜ ଆଖିରେ ଦେଖିଛୁ ? ହଁ ଆଜ୍ଞା, ମୁଁ ପରା ନିଜ ଆଖିରେ ଦେଖିଛି ।

ପୋଲିସ୍ ଏକଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ପିଲାଟି ଯେ ସତକଥା କହୁଛି ଠିକ୍, ହେଲେ ଆମ ଆଇନ୍ କ'ଣ ଏହାକୁ ମାନିବ ? ପିଲାଙ୍କ ସାକ୍ଷୀ-ସାକ୍ଷୀ ନୁହେଁ । ଭୋଳାର ଶବକୁ ପୋଷ୍ଟମର୍ଟମ ପାଇଁ ପଠାଇ ଚାଲିଗଲେ । କେତେଜଣଙ୍କ ନାଆଁ ଟିପିନେଲେ ।

ଥାନାକୁ ଜଣ ଜଣ କରି ଯେତେ ଜେରା କଲେ ମଧ୍ୟ କେହି ଜଣେ ହେଲେ ଭୟରେ କହିଲେ ନାହିଁ । ଦେଖୁ ଦେଖୁ ଏକ ମର୍ଡ଼ର କେଶରେ ବିରୁ ଦାଦା ନିର୍ଭୟରେ ବୁଲିବ ? ଧର୍ମ ସହିବ ତ ! ବଡ଼ ଚିନ୍ତିତରେ ପଡ଼ିଗଲେ ଥାନାବାବୁ ।

ବିରୁ ଦାଦା ବିରୋଧରେ ସତ୍ୟ ସାକ୍ଷୀ ଦେଇଛି, ଏକଥା ବିରୁ ଦାଦାକୁ ଅଛପା ରହିଲା ନାହିଁ । କେତେକ ଖଳଲୋକ ବିରୁ ଦାଦାକୁ ଏ ଖବରଟା ଜଣାଇଦେଲେ ।

ରାଗରେ ବିରୁ ଦାଦାର ମୁହଁଟା ବିକଟାଳ ହୋଇଗଲା । ଏଡ଼େ ବକଟେ ମେଞ୍ଚଡ଼ ଟୋକା, ତା'ର ପୁଣି ଏତେ ସାହସ ମୋ ବିରୁଦ୍ଧରେ କହିଲା ! ଠିକ୍ ଅଛି । ଦେଖିବି, ତାକୁ କିଏ ମୋ ହାତରୁ ରକ୍ଷା କରିବ ? ରାତିରେ ଟିଉସନରୁ ଫେରିବା ବାଟରେ ଉଠାଇନେଲା ବିରୁ ଦାଦା ।

ଗୋଟିଏ ଅନ୍ଧାରୁଆ ଘରେ ପୂରାଇ ଚାବି ଦେଇଦେଲା । ଶୁଖି ଶୁଖି ମରୁ । ପାଣି ମଧ୍ୟ ଟୋପାଏ ଦିଆଗଲା ନାହିଁ ।

ବିଚରା ସତ୍ୟ ନଖାଇ ନ ପିଇ ପଡ଼ିରହିଲା ସେଇ ଅନ୍ଧାର ଘର ଭିତରେ ।

ସତ୍ୟ ଘରକୁ ନ ଆସିବାରୁ ମା' ବଡ଼ ଚିନ୍ତିତ ହୋଇପଡ଼ିଲେ । ରାତି ରାତି ମାଷ୍ଟ୍ରେଙ୍କ ନିକଟକୁ ଗଲେ । ପୁଅର ସନ୍ଧାନ ପାଇଲେ ନାହିଁ । ମନରେ ସନ୍ଦେହ ହେଲା । ବିରୁ ଦାଦା କ'ଣ ଉଠାଇ ନେଲା ? ହେ ଭଗବାନ ! ମୋ ପୁଅକୁ ରକ୍ଷାକର । ତୁମେ କେବଳ ମୋର ସାହା । କହି କାନ୍ଦିପକାଇଲେ ।

ମାଷ୍ଟ୍ରେ ସତ୍ୟର ମାଆଙ୍କୁ ସାନ୍ତ୍ୱନା ଦେଇ କହିଲେ- ବ୍ୟସ୍ତ ହୁଅନା । ସତ୍ୟର ନିଶ୍ଚୟ ଜୟ ହେବ ମୋ ମନ କହୁଛି ସେ ଭଲରେ ଅଛି । ତେବେ ଡ଼େରି କରିବା ଠିକ୍ ହେବନାହିଁ । ଥାନାରେ ଏ ବିଷୟ ଜଣାଇବାକୁ ହେବ । ଚାଲନ୍ତୁ ଯିବା ।

ମାଷ୍ଟ୍ରେଙ୍କ ସହିତ ସତ୍ୟକାମର ମାଆ ଥାନାରେ ଏ ବିଷୟ ଲିଖିତ ଆକାରରେ ଦେଲେ । ଥାନାବାବୁ ସବୁ ଜାଣିସାରିବା ପରେ ସତ୍ୟକୁ ଉଦ୍ଧାର କରିବାର ପ୍ରତିଶ୍ରୁତି ଦେଲେ । ବିରୁ ଦାଦା ବିରୋଧରେ ବୟାନ କରିଥିବାରୁ ବିରୁ ଦାଦା ଯେ ଏ କାର୍ଯ୍ୟ କରିଛି, ଏହା ନିଃସନ୍ଦେହରେ କୁହାଯାଇ ପାରେ ।

ଥାନାବାବୁ ଉପରିସ୍ଥ ହାକିମ ଏସ୍.ପି. ସାହେବଙ୍କୁ ଜଣାଇଦେଲେ । ସଦଳବଳେ ସତ୍ୟର ଉଦ୍ଧାର କାର୍ଯ୍ୟରେ ଲାଗିପଡ଼ିଲେ । ଦୁଇଦିନ ବିତିଗଲା । ସତ୍ୟର କୌଣସି ସନ୍ଧାନ ମିଳିଲା ନାହିଁ ।

ରେଡ଼ିଓ, ଟି.ଭି ଓ ଖବରକାଗଜରେ ଏ ସମ୍ବାଦ ପ୍ରକାଶ ପାଇଲା- ସତ୍ୟର ଫଟୋ ବାହାରିଲା ।

''ଯଦି କେହି ସହୃଦୟ ବ୍ୟକ୍ତି ସତ୍ୟକାମର ସନ୍ଧାନ ପାଆନ୍ତି, ତେବେ ନିକଟସ୍ଥ ଥାନାକୁ ଜଣାଇଲେ ୫ ହଜାର ଟଙ୍କା ପୁରସ୍କାର ପାଇବେ ।'' ଆଜି ରାକ୍ଷୀ ପୂର୍ଣ୍ଣିମା । ସକାଳୁ ଉଠି ପିଙ୍କୁଲି ଗାଧୋଇପଡ଼ି ନୂଆ ଫ୍ରକ୍ ପ୍ୟାଣ୍ଟ ପିନ୍ଧି, ଖାଇସାରି ରାକ୍ଷୀଟିକୁ ହାତରେ ଧରି ବାହାରିଲା । ଦାଣ୍ଡ ଦୁଆରେ ଦେଖିଲା ବାପା ଠିଆ ହୋଇଛନ୍ତି । ଆଖି ଲାଲ । ସ ତେ ଯେମିତି ଜଳୁଛି । ଡର ଲାଗିଲା । ଫେରି ଆସିଲା । ବାଡ଼ି ପଟ କବାଟ ଖୋଲି ବାହରିଗଲା । ଯାଉ ଯାଉ ଘର ଭିତରୁ କାନ୍ଦଣା ସ୍ୱର ଶୁଣି ଠିଆ ହୋଇଗଲା । କିଏ କାନ୍ଦୁଛି ! ପୁଣି ଏଇ ନିଛାଟିଆ ଘର ଭିତରେ ! ପାଖକୁ ଗଲା । କବାଟରେ ତାଲା ପଡ଼ିଛି । ଝରକା ପାଖକୁ ଯାଇ ଡାକିଲା - କିଏ କାନ୍ଦୁଛ ?

ମୁଁ ।

କାହିଁକି ଏ ଘରେ ରହିଛ ?

ମୁଁ କିଛି ଜାଣିନି ।

ତୁମ ବାବା ମୋତେ ଏ ଘରେ ରଖିଛନ୍ତି । ଦୁଇ ଦିନ ହେଲା କିଛି ଖାଇନି । ଭାରି ଭୋକ ହେଉଛି । ପାଣି ଟୋପାଏ ପିଇବାକୁ ଦେବ ?

ଆଗେ କୁହ, ତୁମେ କିଏ ?

ମୁଁ ସତ୍ୟ ।

ଓ ! ସତ୍ୟଭାଇ, ତୁମେ ଆଗ ଏଇ ଝରକା ପାଖକୁ ଆସ ।

ବହୁତ କଷ୍ଟରେ ସତ୍ୟ ଝରକା ରେଲିଂକୁ ଧରି ଠିଆ ହେଲା । ପିଙ୍କୁଲି ସତ୍ୟର ହାତଟାକୁ ବାହାରକୁ ଟାଣି ଆଣିଲା ।



ଗୋରା ତକତକ ଚମ୍ପାଫୁଲିଆ ହାତ । ପିଙ୍କୁଲି ହାତରେ ଜରିକାମର ଝଲମଲିଆ ରାକ୍ଷୀ । ଅପୂର୍ବ ମିଳନ । ପିଙ୍କୁଲି ବାନ୍ଧିଦେଲା ସତ୍ୟର ହାତରେ । ନମସ୍କାର ହୋଇ କହିଲା - ଆଜିଠାରୁ ତୁମେ ମୋର ଭାଇ ହେଲ । ସତ୍ୟ ଭାଇ, ମନେ ରଖିଥିବ । ବିପଦ ବେଳେ ମୋତେ ନିଶ୍ଚୟ ସାହାଯ୍ୟ ହେବ ।

ଆଜି ପରା ଦିନରେ ମୋ ପାଖରେ କ'ଣ ଅଛି, ତୋତେ ଦେଇ ଶୁଭ ମନାସିବି ଭଉଣୀ ! ମୋ ପାଖରେ ଏଇ ପଚାଶ ପଇସିଟି ଅଛି । ନେ, ମୁଁ ଯଦି ତୋର ପ୍ରକୃତ ଭାଇ ହୋଇଥିବି ନିଶ୍ଚୟ ନେବୁ । ଫେରାଇବୁ ନାହିଁ ।

ହଉ ନେଲି । ଯାଉଛି ବାବାଙ୍କୁ କହି ତୁମକୁ ଭଉଣୀ ହିସାବରେ ଆଗେ ଏଇ ଅନ୍ଧାରୁଆ ଘରୁ ବାହାର କରିସାରେ । ତା'ପରେ ତୁମେ ମୋତେ .....

ଏହାକହି ପଛକୁ ବୁଲିପଡ଼ି ଦେଖିଲା ବେଳକୁ ତା'ର ବାବା ବିରୁ ଦାଦା କାଠ ପିତୁଳା ଭଳି ଠିଆ ହୋଇଛି । ଆଖିରୁ ଲୁହଧାର ବହିଯାଇଛି ।

ବିରୁ ଦାଦାର ପଛ କଥା ମନେପଡ଼ିଯାଇଛି । ତା'ର ବି ଏମିତି ଜଣେ ରାକ୍ଷୀ ଭଉଣୀ ଥିଲା । ତା ବିପଦ ବେଳେ ତାକୁ ସାହାଯ୍ୟ ହୋଇ ପାରି-ନଥିଲା । ମଦ୍ୟପ ସ୍ୱାମୀ ହାତର ଅତ୍ୟାଚାର ସହିନପାରି ଡେଇଁପଡ଼ିଥିଲା ବଢ଼ିଲା ନଈକୁ । ତିନି ଦିନ ପରେ ବିରୁ ଦାଦା ପାଖରେ ଖବର ପହଞ୍ଚିଲା ବେଳକୁ ସବୁ ଶେଷ ହୋଇଯାଇଥିଲା ।

କିନ୍ତୁ ଆଜି ଏ କ'ଣ ? ପୁଣି ସେଇ ରାକ୍ଷୀ ! ଭୁଲିଯାଇଥିବା ବିଗତ ବ୍ୟଥାକୁ ରାକ୍ଷୀଟା ଦଂଶନ କରୁଛି, ନିର୍ବାକ୍ ନିସ୍ପନ୍ଦ ବିରୁଦାଦା ।

ପିଙ୍କୁଲି ବାବାଙ୍କୁ ହଲାଇଦେଲା । ହାତଧରି କହିଲା- ବାବା, ସତ୍ୟ ଭାଇଙ୍କୁ ଏ ଘରୁ ବାହାର କରିଦିଅ । ମୁଁ ତାଙ୍କୁ ମିଠା ଖୁଆଇବି । ଆଜି ପରା ରାକ୍ଷୀ ପୂନେଇଁ ।

ବିରୁ ଦାଦା କୋଳକୁ ଉଠାଇନେଲା ପିଙ୍କୁଲିକୁ । ପକେଟରୁ ଚାବି ବାହାର କରି କବାଟ ଖୋଲିଲା । ସତ୍ୟକୁ ଉଠାଇ ଛାତିରେ ଚାପି ଧରିଲା ବିରୁ ଦାଦା । ଘରକୁ ନେଲା । ପିଙ୍କୁଲି ବୋଉଙ୍କୁ କହିଲା । ସତ୍ୟକୁ ତୁମେ ଗାଧୋଇ ଦିଅ, ମୁଁ ବଜାରରୁ ଆସେ । ମୋଟର ସାଇକେଲ୍ ଷ୍ଟାର୍ଟ କରି ଚାଲିଗଲେ ବଜାରକୁ ।

ସତ୍ୟ ପାଇଁ ଭଲ ଦାମୀ ଡ୍ରେସ୍ ହଳେ କିଣିଲେ ବିରୁ ଦାଦା । ଜୋତା ମୋଜା ହଳେ ସୋ ରୁମ୍‌ରୁ ଆଣିଲେ । ଘରେ ତାକୁ ପିନ୍ଧାଇଦେଲେ ।

ସତ୍ୟର ମୁଣ୍ଡରେ ସିନ୍ଦୁର ଚନ୍ଦନ ଲଗାଇଦେଲା ପିଙ୍କୁଲି । ଦୁହେଁ ମିଶି ପିଠା ଆଉ ମିଠା ଖାଇଲେ ।

ସତ୍ୟ ଓ ପିଙ୍କୁଲିକୁ ମୋଟର ସାଇକେଲରେ ବସାଇ ବିରୁ ଦାଦା ଚାଲିଲେ ଥାନାକୁ । ଗଲାବେଳେ ସତ୍ୟ ଘରକୁ ଖବରଟା ପଠାଇଦେଲେ ଥାନାକୁ ଯିବାପାଇଁ ।

ପୋଲିସ୍ ବିଭାଗ ଉଦ୍‌ବିଗ୍ନ । ଦୀର୍ଘ ଦୁଇଦିନ ବିତିଗଲା, ସତ୍ୟର କୌଣସି ସମ୍ବାଦ ମିଳିଲା ନାହିଁ । ଥାନାବାବୁ ବଡ଼ ଚିନ୍ତିତ । କ'ଣ କହି ସତ୍ୟର ମା'ଙ୍କୁ ପ୍ରବୋଧନା ଦେବେ !

ଏତିକି ବେଳେ ବିରୁ ଦାଦାଙ୍କ ବୁଲେଟ୍ ଥାନା ଆଗରେ ବ୍ରେକ୍ ଦେଲା । ବିରୁ ଦାଦା ଗାଡ଼ିରୁ ଓହ୍ଲାଇପଡ଼ି ସତ୍ୟ ଓ ପିଙ୍କୁଲିକୁ ଦୁଇ କାଖରେ ଧରି ଥାନା ଭିତରକୁ ଗଲେ ।

ମୁଁ ହାରିଗଲି ଥାନାବାବୁ, ମୁଁ ହାରିଗଲି । ସତ୍ୟର ସତ୍ୟତା ପାଖରେ ହାରିଗଲି । ଏଇ ଯେଉଁ ରାକ୍ଷୀ ଦେଖୁଛନ୍ତି- ତା'ରି ପାଇଁ - କେବଳ ତା'ରି ପାଇଁ ମୋ ମନର ରାକ୍ଷସ ହାରିଗଲା । ଶୁଣିବ, ଶୁଣିବ ଥାନାବାବୁ ! ମୋର ମଧ୍ୟ ଜଣେ ନିରୀହା ଅବଳା "ରାକ୍ଷୀ" ଭଉଣୀଟିଏ ଥିଲା । ତା ଦୁର୍ଦ୍ଦିନରେ ମୁଁ ତାକୁ ସାହାଯ୍ୟ କରି ପାରିଲି ନାହିଁ । ସେ ବିଚାରୀ କୌଣସି ଆଶା ଭରସା ନପାଇ ସବୁଦିନ ପାଇଁ ଛାଡ଼ି ଚାଲିଗଲା । ଆଜି ସେଇ ରାକ୍ଷୀ ବନ୍ଧନର ଦୃଶ୍ୟ ଦେଖି ମୋର ପଛ କଥା ସବୁ ଗୋଟି ଗୋଟି ହୋଇ ମନେପଡ଼ିଗଲା । ମୋର ଦୁର୍ଦ୍ଧର୍ଷ ମନ ତରଳିଗଲା । ମୁଁ କହୁଛି- ମୁଁ ଦୋଷୀ । ମୋତେ ଶାସ୍ତି ଦିଅ ଥାନାବାବୁ, ମୁଁ ଅପରାଧୀ । ଦୁଇ ହାତକୁ ଦେଖାଇ ଆଜି ରାକ୍ଷୀ ପୂନେଇଁରେ ମୋ'ରି ହାତରେ ଲୌହର ରାକ୍ଷୀ ଶୃଙ୍ଖଳ ପିନ୍ଧାଇଦିଅନ୍ତୁ । ପାଗଳଙ୍କ ଭଳି ଗପି ଚାଲିଲା ବିରୁ ଦାଦା । ସମସ୍ତେ ବିରୁ ଦାଦାର କଥା ଶୁଣୁଥିଲେ ।

ପୋଲିସ୍ ବାବୁ ଆସିଯାଇଥିଲେ । କେତେବେଳୁ ସବୁ ଶୁଣୁଥିଲେ । ଜଗା ମାଷ୍ଟ୍ରେ ଓ ସତ୍ୟର ମା' ମଧ୍ୟ ଆସି ପହଞ୍ଚିଗଲେ ଥାନାରେ । ମା'ଙ୍କୁ ଦେଖି ସତ୍ୟ ଆସି କୁଣ୍ଢାଇପକାଇଲା ।

ଇନ୍‌ସପେକ୍ଟର ହାତକଡ଼ା ପିନ୍ଧାଇ ବିରୁ ଦାଦାକୁ ହାଜତ ଭିତରକୁ ନେଇଗଲେ । ଏକାକୀ ଠିଆହେଲା ପିଙ୍କୁଲି । କିଛି ଜାଣିପାରୁନଥିଲା । ଖାଲି କାନ୍ଦୁଥିଲା ।

ସତ୍ୟ ମା'ଙ୍କ କୋଳରୁ ଯାଇ ପିଙ୍କୁଲିର ହାତଧରି ନେଇ ଆସି କହିଲା-

ଛି- ମୋ ସୁନା ଭଉଣୀଟା କାନ୍ଦନା । ଆଖିରୁ ଲୁହ ପୋଛିଦେଲା । ମୁଁ ପରା ଅଛି । ତୋ ଭାଇ ପରା ତୋ ପାଖରେ ଅଛି । କା-ନ୍ଦେ-ନା । ଆମେ ବାବାଙ୍କୁ ନିଶ୍ଚୟ ମୁକୁଳେଇ ନେବା ।

ଭାଇ ଭଉଣୀ ଦୁହେଁ ପୋଲିସ୍ ବାବୁଙ୍କ ଦୁଇ ଗୋଡ଼କୁ କୁଣ୍ଢାଇ ଧରିଲେ । ଆମ ବାବାଙ୍କୁ ଫେରାଇଦିଅ ବାବୁ । ସେ ଭାରି ଭଲ ଲୋକ । ଏବେ ସେ ବଦଳିଗଲେଣି । ଆଉ-ଜୀବନରେ କେବେ ଅପରାଧ କରିବେ ନାହିଁ । ଛାଡ଼ିଦିଅନ୍ତୁ ।

ଉପସ୍ଥିତ ଲୋକମାନଙ୍କ ମିନତି ଓ ସତ୍ୟ ପିଙ୍କୁଲିର ଅଳି ନିକଟରେ ହାରିଗଲା ଆଇନ୍ ।

ବିରୁ ଦାଦା ହାତରୁ ଶୃଙ୍ଖଳ ଖୋଲିଲା । ପିଙ୍କୁଲି ଓ ସତ୍ୟକୁ କାଖରେ ଧରି ଓହ୍ଲାଇ ଆସିଲେ ବିରୁ ଦାଦା ।

ସଭିଙ୍କ ଆଖିରେ ଆନନ୍ଦର ଅଶ୍ରୁ । ସେତେବେଳକୁ ସଞ୍ଜ ନଇଁ ନଇଁ ଆସୁଥାଏ, ଦୂର ଦିଗ୍‌ବଳୟ ସେପାରିରୁ ।






ଜମିଦାର ବାବୁଙ୍କର ଗୋଟିଏ ଝିଅ ଥିଲା । ନାଁ  ତା'ର ଦୀପାଳି । ପଞ୍ଚମ ଶ୍ରେଣୀରେ ପଢୁଛି । ଶ୍ରେଣୀରେ ପ୍ରଥମ ହେଉଛି । ଗୁରୁଜୀମାନେ ଦୀପାର ବ୍ୟବହାରରେ ଭାରି ଖୁସି । ଗରିବ ପଢ଼ାସାଙ୍ଗମାନଙ୍କୁ ଆଣିଥିବା ଜଳଖିଆକୁ ବାଣ୍ଟିଦିଏ । ଦୁଃଖୀ ନିରାଶ୍ରୟମାନଙ୍କୁ ସାହାଯ୍ୟ କଲେ ମନରେ ଅପାର ଆନନ୍ଦ ପାଏ ।

ଶନିବାର । ସକାଳୁଆ ସ୍କୁଲ । ଏଗାରଟା ବେଳେ ଛୁଟି । ପଢ଼ା ସାରି ଘରକୁ ଯାଉଥିଲା ବେଳେ ଦେଖିଲା - କଳେଇ ବୁଢ଼ୀ ଜରରେ ଗଡୁଛି । ସବୁ ଲୋକଙ୍କ ସହିତ କଳି ଲଗାଏ ବୋଲି ସମସ୍ତେ କଳେଇ ବୋଲି  ଚିଡ଼ାନ୍ତି । କେହି ଭଲପାଆନ୍ତି ନାହିଁ । ବୁଢ଼ୀଟା ଜରରେ କମ୍ପୁଛି । ହେଲେ  କେହି  ଆଡ଼ ଆଖିରେ ଚାହୁଁନାହାନ୍ତି । ପାଟି ଶୁଖି ଅଠା ଅଠା ଲାଗୁଛି । ପାଣି ପାଣି ବୋଲି କହୁଛି । କିନ୍ତୁ ଦେଉଛି କିଏ ? ବୁଢ଼ୀକୁ ଛାଡ଼ିଦେଲେ ଏ ସଂସାରରେ ତା'ର କେହି ନାହାନ୍ତି ।

ଦୀପା କାନରେ ବୁଢ଼ୀର କ୍ଷୀଣ ସ୍ୱର ଶୁଭିଲା । କବାଟ ଖୋଲି ବୁଢ଼ୀ ପାଖକୁ ଗଲା । ପାଟିରେ ପାଣି ପିଆଇଦେଲା । ଅଜାଣତରେ ବୁଢ଼ୀର ହାତ ଦୀପାର ମୁଣ୍ଡକୁ ସାଉଁଳାଇ କହିଲା - କିଏ, ତୁ କିଏ ମା ! ମୋତେ ବଞ୍ଚାଇଦେଲୁ ମା । ଆଜିକୁ ଦି' ଦିନ ହେବ ଜ୍ୱର । କିଛି ଖାଇନାହିଁ । ସେ ଜଗା ମାଷ୍ଟ୍ରେଙ୍କୁ ଟିକେ ମୋ ପାଖକୁ ଡ଼ାକିଦେବୁ କି ?

ହଁ, ମୁଁ ଯାଉଛି ଡ଼ାକି ଆଣିବି । କହି ଘରକୁ ଆସିଲା । ବହିପତ୍ର ରଖି ବୋଉକୁ ଯାଇ କହିଲା- ବୋଉ ! ଗୋଟେ କଥା କହିବି ରଖିବୁ ? କ'ଣ କହୁନୁ ! ଏମିତି କି କଥା କହିବୁ ଯେ ରଖି ପାରିବିନି ! ମୁଁ ଆସିଲା ବେଳେ ଦେଖିଲି - କଳେଇ ବୁଢ଼ୀଟାକୁ ଭାରୀ ଜର ହେଇଛି । ଖାଲି ଗଡୁଛି । ଉଠିପାରୁନାହିଁ । କାଲିଠୁ କିଛି ଖାଇନାହିଁ । ଆମ ଘରେ ତ ସବୁ ଜିନିଷ ଅଛି । ଆମେ ଖାଇବା । ସେ କ'ଣ ସେମିତି ଉପାସରେ ପଡ଼ି ରହିଥିବ ? କିଛି ଖାଇବା ଜିନିଷ ମୋତେ ଦେ - ମୁଁ ନେଇ ତାକୁ ଖୁଆଇ ଆସିବି । ନହେଲେ ବିଚାରୀ ମରିଯିବ । ଦୀପାଳିର ମା' ସୁମତୀ ଦେବୀ ଜଣେ ଧର୍ମପରାୟଣା ଦୟାବତୀ । ଝିଅର କଥା ଶୁଣି ଖାଇବା ଜିନିଷ ଘରୁ ଦେଲେ ।

ଦୀପାଳି ଖାଇବା ଜିନିଷ ନେଇ କଳିହୁଡ଼ି ବୁଢ଼ୀକୁ ଖୁଆଇଦେଲା । ଗୋଡ଼ ହାତକୁ ଘଷି ଆଉଁଷିଦେଇ ଗୁରୁଜୀଙ୍କ ପାଖକୁ ଗଲା । ମାଷ୍ଟ୍ରେ ଏ ଖବର ଶୁଣି ଡ଼ାକ୍ତର ବାବୁଙ୍କୁ ଡ଼ାକି ବୁଢ଼ୀର ଚିକିତ୍ସା କରାଇଲେ । ବୁଢ଼ୀ ଭଲ ହୋଇଗଲା ପରେ ଦୀପାକୁ ନିଜ ଝିଅ ପରି ଭଲ ପାଇଲା । ଆଉ କେବେ ଦିନକ ପାଇଁ କାହା ସହିତ କଳି କଲାନାହିଁ ।

କିଛିଦିନ ପରେ ଦୀପାର ଦେହ ଖରାପ ହେଲା । ସେ ବିଛଣାରୁ ଉଠିଲା ନାହିଁ । ଖାଲି ବାଉଳେଇ ଚାଉଳେଇ ହେଲା । କିଛି ଖାଇଲା ନାହିଁ । ଡ଼ାକ୍ତର ଆସିଲେ । ଦୀପାକୁ ପରୀକ୍ଷା କରି ଔଷଧ ଇଞ୍ଜେକ୍ସନ ଦେଲେ ।

ଏତିକି ବେଳେ ଜମିଦାରଙ୍କ ଚାକର ପିଲାଟି ଆସି କହିଲା- ଡ଼ାକ୍ତର ବାବୁ ! ଆପଣଙ୍କୁ କିଏ ଜଣେ ଡ଼ାକୁଛି । ତା ପୁଅକୁ ଆଣିଛି । ତା ଦେହ ଭୀଷଣ ଖରାପ । ବାହାରେ ଠିଆ ହୋଇଛି । ଶୀଘ୍ର ଆସନ୍ତୁ ।

ଡ଼ାକ୍ତରବାବୁ ଷ୍ଟେଥିସ୍‌କୋପ୍‌ଟା ହାତରେ ଧରି ବାହାରକୁ ଆସିଲେ । ଦେଖିଲେ ଯେ ଜଣେ ଅପରିଚ୍ଛନିଆ ଲୋକ ତା ପାଞ୍ଚ ସାତ ବରଷର ପୁଅକୁ କାଖରେ ଧରି ଠିଆ ହୋଇଛି ।

ଡ଼ାକ୍ତରବାବୁଙ୍କୁ ଦେଖି ପୁଅକୁ ଶୁଆଇଦେଇ ଗୋଡ଼କୁ ଧରି କାନ୍ଦି କାନ୍ଦି କହିଲା - ଆଜ୍ଞା ଆପଣ ଗରିବଙ୍କ ମା'ବାପ । ଆପଣ ଭଗବାନ ! ମୋ ପୁଅକୁ ବଞ୍ଚାନ୍ତୁ । ମୁଁ ଡ଼ାକ୍ତରଖାନାକୁ ଯାଇଥିଲି । ଗାଁକୁ ଆସିଛନ୍ତି ବୋଲି ଖବର ପାଇ ସେଠାରୁ ଫେରିଆସିଲି । ମୁଁ ଗରୀବ ଲୋକ ଆଜ୍ଞା ! ଜାତିରେ ହରିଜନ ।

କ'ଣ ହେଇଛି ତା'ର - କହି ପିଲାଟି ଛାତିରେ ଷ୍ଟେଥିସ୍‌କୋପ୍ ଲଗାଇ ପରୀକ୍ଷାକଲେ । ନାଡ଼ି ଦେଖିଲେ ।

ଦାସିଆ କାନ୍ଦି କାନ୍ଦି କହିଲା- ତିନି ଦିନ ହେଲା ପେଟକୁ ମାରୁଛି । କିଛି ଖାଉନାହିଁ । ପେଟକୁ ଚାପିଧରି ଖାଲି ଗଡୁଛି । ତାକୁ ଟିକିଏ ଔଷଧ ଦିଅନ୍ତୁ । ନହେଲେ ସେ ମରିଯିବ । ମୋ ସଂସାର ଭାସିଯିବ ଆଜ୍ଞା !

ଆରେ ତୁ ଏମିତି ବ୍ୟସ୍ତ କାହିଁକି ହେଉଛୁ ? ରହ ତା'ର କ'ଣ ହେଇଛି ମୁଁ ଦେଖେ । ଔଷଧ ଖାଇଲେ ଭଲ ହୋଇଯିବ । ତା'ପରେ ପିଲାଟିର ପେଟ, ପାଟି, ଜିଭ ଓ ଆଖିକୁ ପରୀକ୍ଷା କଲେ । ଔଷଧ ପାଇଁ ଚିଠା ଲେଖି କହିଲେ- ଯାଆ, ଡ଼ାକ୍ତରଖାନାରୁ କମ୍ପାଉଣ୍ଡରଙ୍କୁ ଦେଖାଇ ଔଷଧ ଆଣି ଖୁଆଇବୁ । ଦିନକୁ ତିନିଥର ଦେବୁ । କ'ଣ ହେଲା କାଲି ଆସି ମୋତେ ଖବର କହିବୁ ।

ଡ଼ାକ୍ତର ବାବୁଙ୍କ ଭରସା ପାଇ ଦାସିଆ ଟିକିଏ ଖୁସି ହେଲା । ମୁଣ୍ଡିଆଟିଏ ମାରି ପୁଅକୁ ଧରି ଡ଼ାକ୍ତରଖାନାକୁ ଚାଲିଗଲା ।

# ଛୁଆଁ ଅଛୁଆଁ

ଡ଼ାକ୍ତର ବାବୁ ଘର ଭିତରକୁ ପଶିଯାଇ ଦେଖିଲେ ସମସ୍ତେ ଘୃଣାରେ ନାକ ଟେକି ବସିଛନ୍ତି । ଏହାର କାରଣ କିଛି ବୁଝିପାରିଲେ ନାହିଁ ।

ଦାଶ ପଣ୍ଡିତେ ରୋକ୍‌ଠୋକ୍ କହିଲେ - ହଇଓ ଡ଼ାକ୍ତର ବାବୁ ! ଆମରି ଆଖି ଆଗରେ ତୁମେ ସେ ଦାସିଆ ପାଣ ପୁଅଟାକୁ ଛୁଇଁଲନା ? ହଁ କ'ଣ ହେଲା ଛୁଇଁଲେ ?

ଛି, ଛି, ପୁଣି ତା ପାଟି ଭିତରେ ହାତ ପୁରାଇ ଜିଭ, ଆଖି ସବୁ ଦେଖିଲ ! ତମେ ବାବୁ ଆଉ ଏ ଘର ଭିତରେ ପଶନାହିଁ । ଦାସିଆ ପାଣ ପୁଅକୁ ଛୁଇଁ ଛୁଆନ୍ତା ହେଇଛ, ଆମକୁ ଆଉ ଛୁଅଁନା । ଘର ଭିତରେ ପଶିଲଣି, ଅପବିତ୍ର ହେଲାଣି । ତୁମେ ବାହାରକୁ ଯାଇ ଗାଧୋଇ ଆସ । ମୁଁ ଯାଉଛି, ଠାକୁର ଘରୁ ତୁଳସୀ ପାଣି ଆଣେ । ସିଞ୍ଚା ହେଲେ ପବିତ୍ର ହେବ । ଓଃ, ହୋ, ଏ ଦୁନିଆରୁ ଧର୍ମ କର୍ମ ସବୁ ବୁଡ଼ିବାକୁ ବସିଲାଣି !

ଡାକ୍ତର ବାବୁ ଏକଥା ଶୁଣି ମନେ ମନେ ଭାବୁଥିଲେ - ହେ ଭଗବାନ୍, ଏ ଯୁଗରେ ପୁଣି ଏମିତି ଲୋକ ରହିଛନ୍ତି ! କେଉଁଦିନ ଏମାନଙ୍କ ମନରୁ 'ଏ ଅନ୍ଧବିଶ୍ୱାସ' ଦୂର ହେବ କେଜାଣି !

ଡାକ୍ତର ବାବୁ କହିଲେ - ''ତୁମମାନଙ୍କ ମନରେ ଏଯାଏ ଛୁଆଁ ଅଛୁଆଁ ଜାତିଭେଦ ପ୍ରଥା ରହିଛି ? ସେମାନେ ତ ଆମରି ଭଳି ମଣିଷ । ତାଙ୍କରି ଦେହରେ ଆମରି ପରି ରକତ ରହିଛି । କାମ କରିବାର ବଳ ଅଛି । ତାଙ୍କୁ ଛୁଇଁଲେ ଆମେ ଅଛୁଆଁ ହେବା, ଏ କେଉଁ କଥା ! କାହିଁ, ମୁଁ ତ ଛୁଇଁଲି, ମୋ'ଠାରେ କେଉଁଠି ଛୁଆଁନ୍ତା ରହିଲା ? ଦେଖାଇ ପାରିବେ ପଣ୍ଡିତେ, ଆପଣଙ୍କ ତୁଳସୀ ପାଣି ପଡ଼ିଲେ ଛୁଆଁ ପଳାଇବ ? ଛି, ଛି, ଆପଣଙ୍କ

ମନରେ ଏତେ ଆବିଳତା କାହିଁକି ? ତୁମ ପୁରାଣରେ ପରା ଦାସିଆ ବାଉରିର ନଡ଼ିଆକୁ ନିଜେ ଜଗନ୍ନାଥ ହାତ ବଢ଼ାଇ ନେଇଯାଇଥିଲେ ! ଆଉ ମୋଚି ରାମ ଦାସ କଥା ତ ଜାଣ । ଏକଥା ମନରୁ କେମିତି ଭୁଲିଯାଉଛ ? ଠିକ୍ ଅଛି, ମୁଁ ଯାଉଛି, ତୁମେ ସବୁ ତୁଳସୀ ପାଣି ସିଞ୍ଚି ପବିତ୍ର ହେଉଥାଅ । କହି ଘରୁ ବାହାରି ଆସିଲେ । ଧୀରେ ଧୀରେ ଦୀପାଳିର ଦେହ ଭୀଷଣ ଖରାପ ହେଲା । ଛାତିର ପଞ୍ଜରା ହାଡ଼ ଦିଶିଲା । ଯେଉଁ ପାଣି ଟୋପାଏ ଦିଆଗଲା ସଙ୍ଗେ ସଙ୍ଗେ ବାହାରି ଆସିଲା । ଜମିଦାରଙ୍କୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ । ଡାକ୍ତର ବାବୁ ଅପମାନ ପାଇ ଫେରିଯାଇଛନ୍ତି । ଡାକିଲେ ଆସିବେ କି ନାହିଁ । ଏଣେ ପୁଣି ଦୀପାର ଜୀବନ ! ଦୀପାକୁ ଦେଖିଲେ, ସେ ଆଖି ତରାଟୁଛି । ମାଆଙ୍କ ଆଖିରୁ ଲୁହଧାର ଛୁଟିଛି । ସମ୍ଭାଳି ପାରିଲେ ନାହିଁ ଏ ଦୃଶ୍ୟକୁ ଦେଖି । ସଙ୍ଗେ ସଙ୍ଗେ ଦୀପାକୁ କୋଳରେ ଧରି ଡାକ୍ତରଖାନାକୁ ଚାଲିଲେ ।

## ରକ୍ତର ରଙ୍ଗ ଲାଲ, କିନ୍ତୁ ମେଳ ଅଲଗା

ଡାକ୍ତର ବାବୁ ଦୀପାକୁ ପରୀକ୍ଷା କରି ଦେଖିଲେ । ଅବସ୍ଥା ଅତି ସାଂଘାତିକ । ତୁରନ୍ତ ରକ୍ତ ଦରକାର । ରକ୍ତ ପରୀକ୍ଷା କରି ଦେଖିଲେ ଯେ, ଏ+ବି ଗ୍ରୁପ୍ ବାହାରିଲା । ଏଭଳି ଗ୍ରୁପ୍‌ର ରକ୍ତ ମିଳିବା କଷ୍ଟକର । ଜମିଦାର ବାବୁ କାନ୍ଦି କାନ୍ଦି କହିଲେ, ଯେତେ ରକ୍ତ ଲାଗିବ ଲାଗୁ, ମୋ' ଦେହରୁ ସବୁ ରକ୍ତ କାଢ଼ିନିଅ ଡାକ୍ତର ବାବୁ, ହେଲେ ମୋ ଦୀପାକୁ ବଞ୍ଚାଇଦିଅ । ଡାକ୍ତର ବାବୁ ଜଣ ଜଣ କରି ରକ୍ତର ଗ୍ରୁପ୍ ମେଳ କଲେ, କିନ୍ତୁ କାହାରି ରକ୍ତ ଦୀପା ରକ୍ତ ସହିତ ମେଳ ଖାଇଲା ନାହିଁ । ଡାକ୍ତର ବାବୁଙ୍କ ମନ ମଳିନ ପଡ଼ିଗଲା ।

ଖବର ପାଇ ଜଗା ମାଷ୍ଟ୍ରେ ଡାକ୍ତରଖାନାକୁ ଯାଉଥିଲେ । ହରିଜନ-ସାହିର କେତେଜଣଙ୍କୁ ସାଙ୍ଗରେ ଡାକିନେଲେ ।



''ଯାହାକୁ ଭଗବାନ ରଖିବେ, ତାକୁ କେହି ନେଇ ପାରିବେ ନାହିଁ ।'' ଏମାନଙ୍କ ମଧ୍ୟରୁ କେବଳ ଦାସିଆର ରକ୍ତ ମେଳ ଖାଇଲା । ସଙ୍ଗେ ସଙ୍ଗେ ରକ୍ତ ଦେବାପାଇଁ ଦାସିଆ ଖଟିଆରେ ଶୋଇପଡ଼ିଲା । ଦାସିଆ ଦେହରୁ ନଳୀ ବାଟେ ଥପ୍ ଥପ୍ ହୋଇ ବୋତଲେ ରକ୍ତ ହୋଇଗଲା । ଖଟିଆ ଉପରେ ରକ୍ତ ବୋତଲଟା ଓଲଟାଇ ଷ୍ଟାଣ୍ଡରେ ଝୁଲିଥାଏ । ସମସ୍ତଙ୍କ ଆଖି ସେଇ ରକ୍ତ ବୋତଲଟାରେ ଲାଖି ରହିଥାଏ । ଜମିଦାର ବେଳେ ବେଳେ ଦୀପାର ମୁହଁକୁ ଓ ରକ୍ତ ବୋତଲକୁ ଦେଖୁଥାନ୍ତି । ଲାଲ ଟହଟହ ରକ୍ତ । ଯେମିତି ଜମିଦାରଙ୍କୁ ତାଚ୍ଛଲ୍ୟ କରି କହୁଥାଏ । କି, ଜମିଦାର ବାବୁ ! ଏ ରକ୍ତ କ'ଣ ଛୁଆଁ ନୁହେଁ ? ଆପେ ଆପେ ଆଖିଟା ନଇଁଯାଉଥାଏ ତଳକୁ, ଆଉରି ତଳକୁ ... ।

ରକ୍ତ ଅଧା ସରିଲାବେଳକୁ ଦୀପାର ଆଖିପତା ଟିକିଏ ଟିକିଏ ଖୋଲିଲା । ହାତଗୋଡ଼ ହଲଚଲ ହେଲା । ସମସ୍ତଙ୍କ ମନରେ ସନ୍ତୋଷ ଖେଳିଗଲା । ତିନିଦିନ ପରେ ଦୀପା ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲା । ସେତେବେଳକୁ ଦାସିଆ ଦୁଇ ବୋତଲ ରକ୍ତ ଦେଇସାରିଲାଣି । ତିନିଦିନ ତିନିରାତି କଳେଇ ବୁଢ଼ୀଟା ସେଇ ଡାକ୍ତରଖାନାରେ ରହି ଦୀପାର ସେବା କରୁଥାଏ । ଦୀପାର ଆରୋଗ୍ୟ ପାଇଁ ଖାଲି ଠାକୁରଙ୍କୁ ଡାକୁଥାଏ ।

ଦୀପା କଳେଇ ବୁଢ଼ୀକୁ ଦେଖି କହିଲା- କ'ଣ ଆଇ ! ଆଉ କଳି କରିବୁ ନାହିଁଟି ?

ବୁଢ଼ୀ ଦୀପାକୁ କୋଳକୁ ଟାଣିନେଇ କହିଲା - ତୋ'ରି ପାଇଁ ମୁଁ ତ ବଞ୍ଚିଗଲି । ଆଉ କଳି କରିବି କାହିଁକି ? ତୁ ତ ମୋର ଅଲିଅଳି ଗେହ୍ଲା ନାତୁଣୀ । ମୋ ନୂଆ ଜୀବନର ଆଶାର ଦୀପାଳି । ତୋ'ରି ଆଲୁଅରେ ସେଦିନ ମୁଁ କଳିକୁ ପୋଡ଼ିଦେଇଛି ।

ଦାସିଆର ରକତ ଆଜି ଜମିଦାରଙ୍କ ଅତି ଅଲିଅଳୀ ଝିଅ ଦୀପାର ଶିରାରେ ଖେଳୁଛି । ମରଣ ମୁହଁରୁ ଫେରି ଆସିଛି ।

ଦୀପା ଆସିବ । ଜମିଦାରଙ୍କ ଘର ଆଗରେ ଲୋକ ଗହଳି । ଧଳା ରଙ୍ଗର କାର୍‌ଟା ଆସି ଦୁଆର ପାଖରେ ଠିଆହେଲା । ଡାକ୍ତର ବାବୁ, ଦୀପା, ମାଆ ଓହ୍ଲାଇଲେ । ପଛ ସିଟ୍‌ରୁ ଜମିଦାର ଓ ଦାସିଆ ସାଙ୍ଗହୋଇ ଓହ୍ଲାଇଲେ । ଦାସିଆ ଘରକୁ ଫେରିଯାଉଥିଲା ।

ଜମିଦାର ଦାସିଆର ହାତକୁ ଧରି ପିଣ୍ଡା ଉପରକୁ ଉଠିଯାଇ କହିଲେ, ଆଜି ଦାସ ପାଇଁ ମୋ ପ୍ରାଣର ସଂଖାଳୀ ବଞ୍ଚିଗଲା ।

ଡାକ୍ତର ବାବୁ କହିଲେ - ଭାଇମାନେ, ଆମ ମନରେ ଯେଉଁ ଜାତିଭେଦ, ଛୁଆଁ ଅଛୁଆଁ ଭାବ ରହିଛି,ତାହା ଆମକୁ ସବୁ ମଣିଷଠାରୁ ଦୂରେଇ ନେଉଛି । ସେଇ ଅଛୁଆଁ ପିଲାଙ୍କ ମଧ୍ୟରୁ ପାଠ ପଢ଼ି କେହି ଡାକ୍ତର, ଇଞ୍ଜିନିୟର, ଦେଶସେବକ କିମ୍ବା ମନ୍ତ୍ରୀ ନହେବ କିଏ କହିବ ! ଆମ ଦେଶରେ ଯେଉଁ ସମ୍ବିଧାନ ତିଆରି ହେଲା- ତାକୁ କିଏ କରିଛି ଜାଣ ? ସେଇ ଅଛୁଆଁ ଜାତିର ଲୋକ - ତାଙ୍କ ନାମ ଡକ୍ଟର ଆମ୍ବେଦକର । ମହାତ୍ମା ଗାନ୍ଧି ପରା ପାଣ ଜାତିର ଲୋକଙ୍କୁ ହରିଜନ କହିଛନ୍ତି । ସେମାନେ ସବୁ ଭଗବାନଙ୍କ ସନ୍ତାନ । ନିଜ ଆଖିରେ ତ ଦେଖିଲେ ଏଇ ଦାଶରଥି ପାଇଁ ଦୀପାର ଅମୂଲ୍ୟ ଜୀବନ ରକ୍ଷା ପାଇଗଲା । ଆମେ ସବୁ ମନରୁ ଏ ଆବିଳତା ଦୂର ନକଲେ ଆମ ଦେଶ ଆଗେଇବ କିପରି । ଆମେ ସେମାନଙ୍କୁ ଯେତେ ପାଖରେ ରଖିବା ଆମ ଗାଁ ଆମ ଦେଶ ସେତେ ଆଗେଇବ । ସମସ୍ତେ ହାତକୁ ହାତ ମିଳାଇ ଗାଁ କାମରେ ସହଯୋଗ କରିବା ।

ଜମିଦାର ବାବୁ ଦାସିଆର ହାତଧରି କୁଣ୍ଢାଇପକାଇଲେ । ଛାତିରେ ଛାତି ମିଶିଗଲା । ସେହିଦିନ ଠାରୁ 'ଛୁଆଁ ଅଛୁଆଁ' ଭେଦଭାବ ଦୂର ହୋଇ-ଗଲା । ସବୁ ମିଶି ମେଳା ମଉଛବ, ହୋଲି, ମେଳଣ ଆଦି ଉତ୍ସବ ପାଳନ କଲେ ।

କଳେଇ ବୁଢ଼ୀ ଆସି କହିଲା- ମୋର ଆଉ ଏ ଟଙ୍କା କ'ଣ ହେବ ? ନିଅ ଏ ହଜାରେ ଟଙ୍କାକୁ ମୁଁ ସାଇତି ରଖିଥିଲି ବିପଦ ଆପଦକୁ । ମୋର ତ ଆଗକୁ ନାହିଁ କି ପଛକୁ ନାହିଁ । ଆଉ ରଖିବି କାହିଁକି । ଏଇ ଟଙ୍କାରେ ହରିଜନ ସାହିରେ କୂଅଟିଏ ଖୋଳାଇଦେବ । ମଲେ ହେଲେ ମୋ ନାଁ ରହିବ ।

ଆନନ୍ଦରେ ସମସ୍ତେ ତାଳିମାରି ନାଚି ଉଠିଲେ । କଳେଇ ବୁଢ଼ୀକୁ ଧନ୍ୟ ଧନ୍ୟ କଲେ ।






*''ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ,*

*ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ*

*ପ୍ରଭୁ ! ପରମ ଶରଣ*

*ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ । ପ୍ରଭୁ......''*

ପ୍ରାର୍ଥନାର ଝଙ୍କାରରେ ସଂଧ୍ୟା ଆକାଶଟା କମ୍ପି ଉଠିଲା । ପ୍ରାର୍ଥନାରେ ମାଷ୍ଟ୍ରେ ଏତେ ମଜ୍ଜିଯାଇଥିଲେ ଯେ, ଆଖିରୁ ଖାଲି ଲୁହଧାର ଝର ଝର ହୋଇ ବହିଯାଉଥିଲା । କେତେବେଳୁ ସଲିମ୍ ଚାଚା ଆସି ପ୍ରାର୍ଥନା ଶୁଣି ବିହ୍ୱଳ ହୋଇଯାଇଥିଲେ । ସୁଲଳିତ ସୁର ହୃଦୟକୁ ବିଦାରିଦେଲା । ସେଇ ପ୍ରାର୍ଥନାରେ କି କିମିଆ ଥିଲା କେଜାଣି ସତେଯେମିତି ସଲିମ୍ ଚାଚାଙ୍କ ଜୀବନଟା ପ୍ରଭୁଙ୍କ ପାଦତଳେ ଆପେ ଆପେ ସମର୍ପି ଯାଉଥିଲା । ଠିକ୍ ଯେମିତି ନୀରବ ସାଧକ ଭଳି ।

ଏକମାତ୍ର ପୁତ୍ର ରଜାକ୍ । ପଢୁଛି ଜଗା ମାଷ୍ଟ୍ରେଙ୍କ ପାଖରେ । ଅନେକ ଆଶା ମନରେ । ଦି' ଅକ୍ଷର ପଢୁ । ଭଲମନ୍ଦ ଜାଣୁ । ରଜାକ୍‌ର ପଞ୍ଚମ ଶ୍ରେଣୀ । ବୋର୍ଡ ପରୀକ୍ଷା ଆଗକୁ ଅଛି । ରାତିରେ ଟିଉସନ ପଢୁଛନ୍ତି ପଞ୍ଚମ ଶ୍ରେଣୀର ପିଲାମାନେ । ରଜାକ୍ ମଧ୍ୟ ଆସୁଛି । ମାଆଙ୍କୁ ଛାଡ଼ି ଏକା ଶୋଇ ପାରେନା । ରାତିରେ ଏକୁଟିଆ ଘରକୁ ଯାଇ ପାରିବ ନାହିଁ । ତାକୁ ନେବାପାଇଁ ସଲିମ୍ ଚାଚା ପ୍ରତିଦିନ ଆସନ୍ତି । ମାଷ୍ଟ୍ରେଙ୍କ ସହିତ ଦୁଃଖସୁଖ ହୁଅନ୍ତି । ବେଳେବେଳେ ଅସୁବିଧା ହେଲେ ପଚାରନ୍ତି । ମାଷ୍ଟ୍ରଙ୍କୁ ନିଜର ଗୁରୁ ଭଳି ମାନନ୍ତି । ଗୁରୁଙ୍କ ଆଦର୍ଶ ନିକଟରେ ସଲିମ ଚାଚାଙ୍କ ମୁଣ୍ଡ ଆପେ ଆପେ ଭକ୍ତିରେ ନଇଁଯାଏ । ବାଡ଼ିରୁ ପନିପରିବା, ପିଜୁଳି ଆଉ ଅମୃତଭଣ୍ଡା ପାଚିଲେ ଆଗେ ଆଣି ଦେଇ ଯାଆନ୍ତି, ତା'ପରେ ନିଜେ ଖାଆନ୍ତି । ମାଷ୍ଟ୍ରେ ଯେତେ ମନାକଲେ ମଧ୍ୟ ସଲିମ୍ ଚାଚାଙ୍କ ସ୍ନେହ ସରାଗର ଦାନକୁ ଫେରାଇ ପାରନ୍ତି ନାହିଁ । ସଲିମ୍ ଚାଚାଙ୍କ ଭକ୍ତି ନିକଟରେ ଗୁରୁଙ୍କ ଆଦର୍ଶ ହାର ମାନେ ।

''କ୍ଷୀର ସହିତ ନୀରର ସମ୍ପର୍କ,'' ମାଷ୍ଟ୍ରେଙ୍କ ସହିତ ସଲିମ୍ ଚାଚାଙ୍କର । ଦିନେ ମାଷ୍ଟ୍ରେ କହିଲେ- ବୁଝିଲ ସଲିମ୍ ଭାଇ; ଆଲ୍ଲା ହେଉନ୍ତୁ କି ଭଗବାନ ହେଉନ୍ତୁ, ତାଙ୍କ ନିକଟରେ ସମସ୍ତେ ସମାନ । ଦେଖୁନ- ଖ୍ରୀଷ୍ଟିଆନ୍ ଧର୍ମ ପ୍ରଚାରକ ଭଗବାନ ଯୀଶୁଙ୍କୁ ଯେତେବେଳେ ସ୍ୱାର୍ଥପର ପାଦ୍ରିମାନେ ଖଚମିଛ କହି, ନିଜର ସ୍ୱାର୍ଥ ପାଇଁ କ୍ରୁଶ କାଠ ଉପରେ ରଖି ହାତ ପାଦ ଉପରେ କଣ୍ଟା ମାରି ଝୁଲାଇ ଦେଲେ- ପ୍ରଭୁ ଯୀଶୁ କ'ଣ କହିଲେ ଜାଣ ? ସେ ହସି ହସି କହିଲେ- ହେ ପରମ ପିତା ! ଏମାନେ ଅଜ୍ଞ, କ'ଣ କରିବାକୁ ଯାଉଛନ୍ତି ତାହା ସେମାନେ ଜାଣିପାରୁ ନାହାନ୍ତି, ଆପଣ ସେମାନଙ୍କୁ କ୍ଷମା କରନ୍ତୁ । ଆମ ଏଇ ପୃଥିବୀରେ ଯେତେବେଳେ ପାପର ମାତ୍ରା ବଢ଼ିଯାଏ, ତାକୁ ବିନାଶ କରିବା ପାଇଁ ସରଗରୁ ଭଗବାନ ଆମରି ଭଳି ମଣିଷ ହୋଇ ଜନ୍ମ ନିଅନ୍ତି ମରତରେ । ଏଇ ମଣିଷମାନେ

ସେମାନଙ୍କ ସହିତ ମିଶନ୍ତି, ଖେଳନ୍ତି, ତଥାପି ଚିହ୍ନି ପାରନ୍ତି ନାହିଁ । ମଲାପରେ ସେମାନଙ୍କ ଗୁଣ ଗାଆନ୍ତି । ହେଲେ ସେମାନଙ୍କୁ ହରେଇ ପଛରେ ପସ୍ତେଇ ହୁଅନ୍ତି ।

ଯିଏ ସରଗର ସୁଖକୁ ଛାଡ଼ି ଆମରି ମଙ୍ଗଳ ପାଇଁ ମରତକୁ ଓହ୍ଲେଇ ଆସନ୍ତି, ତାଙ୍କରି ଚରଣରେ ନିଜକୁ ସମର୍ପଣ କରିଦେଲେ ଦେଖିବ, ଦୁନିଆର ସକଳ ସୁଖ ପାଇଛ । ଏ ସାରା ଦୁନିଆଟା ତୁମରି ହୋଇଯାଇଛି ।

"ଆଖି ବୁଜିଲେ ସବୁ ଅନ୍ଧାର ।" ଆଉ ସେଇ ଅନ୍ଧାର ଭିତରେ ଦେଖିବାକୁ ଚାହିଁଲେ ସବୁ ସମାନ ଦିଶୁଛି । ଉଚ୍ଚ-ଖାଲ, ସୁନ୍ଦର-ଅସୁନ୍ଦର, ବଡ଼-ସାନ ସବୁ ସେଇ ଅନ୍ଧାର ଭିତରେ ଲୁଚିଯାଇଛି, ଖାଲି ମିଛଟାରେ ଯାହା ମୋହ ମାୟାରେ ଛନ୍ଦି ହୋଇ ତୋର-ମୋର କହି ଘାଣ୍ଟି ହେଉଛେ ।

ହଁ, ସେଇଆ ନୁହେଁ କି ?

ଆଚ୍ଛା, କହିଲ ସଲିମ୍ ଭାଇ, ତୁମେ ଯେତେବେଳେ ପିଲାଟିଏ ହୋଇଥିଲ, ସେତେବେଳେ ତୁମ ମନରେ କ'ଣ ଏଇ ଭେଦଭାବ ଥିଲା ? ଆଜି ଯେମିତି ରଜାକ୍ ସହିତ ସତ୍ୟର ମନ ମିଶି ଏକ ହୋଇଯାଇଛି ! କେହି କାହାକୁ ଘଣ୍ଟାଏ ଛାଡ଼ି ପାରୁ ନାହାନ୍ତି, ନିଜକୁ କେମିତି ଏକ କରି ଦେଇଛନ୍ତି ? ସାଙ୍ଗ କହିବ ତ ଏମିତି ! ମନରେ ଆବିଳତା ନାହିଁ ।

ଖୋଦା ମେହେରବାନି କରନ୍ତୁ । ଏମିତି ସୁଖରେ ଦିନଗୁଡ଼ିକ ବିତିଯାଉ । "ଆଲ୍ଲା ସଲାମତ ରଖେ" କହି ଦୁଇହାତକୁ ଟେକି ଆଲ୍ଲାଙ୍କୁ ଦୁଆ ମାଗିଲା ସଲିମ୍ ।

ପାଠ ପଢ଼ିବା ସହିତ ପିଲାମାନଙ୍କ ଚଳଣି କେମିତି ବଦଳିବ, ସମାଜରେ ଜଣେ ଜଣେ ଆଦର୍ଶ ଲୋକ ହୋଇ ଗାଁ ମାଟିର ସୁନାମ କରିବେ, ଏଇ ଚିନ୍ତା ସବୁବେଳେ ମାଷ୍ଟ୍ରଙ୍କ ମନରେ ଉଙ୍କି ମାରେ । ଛାତ୍ରମାନଙ୍କୁ

ସତ ଉପଦେଶ ଦେଇ କହୁଥିଲେ- ସରଳ ହୁଅ, ନିରଭିମାନୀ ହୁଅ । ଅନାସକ୍ତ ହୁଅ । ଘୃଣା, ଅହଂକାର ଠାରୁ ଦୂରରେ ରୁହ । ସମସ୍ତଙ୍କୁ ନିଜର କରିନିଅ, ଦେଖିବ ତୁମ ଜୀବନରେ ଦୁଃଖ ବୋଲି କିଛି ରହିବ ନାହିଁ । ତୁମେ ଜଣେ ଜଣେ ଭଲ ମଣିଷ ହୋଇ ପାରିବ ।

ପ୍ରତି ଶୁକ୍ରବାର ଦିନ ମାଷ୍ଟ୍ରେ ମସଜିଦ୍ ଆଡ଼େ ବୁଲିବାକୁ ଯାଆନ୍ତି । ନମାଜ ପଢୁଥିବା ମୁସଲମାନ ଭାଇମାନଙ୍କୁ ଶୁଭେଚ୍ଛା ଜଣାନ୍ତି, କାନ୍ଧରେ କାନ୍ଧ ମିଳାଇ କୁଣ୍ଢାଇ ଧରନ୍ତି । ସେତେବେଳେ ନିଜକୁ ନିଜେ ଭୁଲିଯାଆନ୍ତି ସେ ଜଣେ ହିନ୍ଦୁ ବୋଲି । ମୁସଲମାନ ଭାଇମାନେ ମାଷ୍ଟ୍ରଙ୍କୁ ଅତି ଆପଣାର ଭାବନ୍ତି । ସଲିମ୍ ଚାଚା ନିଜ ଘରକୁ ଆଦରରେ ଡାକନ୍ତି । ରଜାକ୍ ମଧ୍ୟ ମାଷ୍ଟ୍ରଙ୍କୁ ଦେଖି ଖୁସି ହୋଇଯାଏ । ଆଉ ରଜାକ୍ ମାଆର ଗୋଡ଼ ତଳେ ପଡ଼େ ନାହିଁ । ମାଷ୍ଟ୍ରଙ୍କ ଅତିଥିଚର୍ଚ୍ଚାରେ ଯେମିତି ଅବହେଳା ନହୁଏ, ସେଥିଲାଗି ନଜର ରଖି କାମ କରେ । ନିଜେ ଆସି ପାଦ ଧୋଇ ନିଜ ପଣତକାନିରେ ଗୋଡ଼ ପୋଛିଦେଇ ପାଦଛୁଇଁ ମୁଣ୍ଡରେ ମାରେ । ସତେ ଯେମିତି ଆଲ୍ଲା ମେହେରବାନି କରି ମାଷ୍ଟ୍ରେଙ୍କ ରୂପରେ ଘରକୁ ଆସିଛନ୍ତି ।

ଫେରିଲା ବେଳେ ବାଟରେ ଗିର୍ଜା ପଡ଼େ । ଗିର୍ଜା ଭିତରେ ପଶନ୍ତି । ମା' କୋଳରେ ଥିବା ଶିଶୁ ଯୀଶୁଙ୍କ ମୂର୍ତ୍ତିକୁ ଅପଲକ ନୟନରେ ଦେଖନ୍ତି । କ୍ରୁଶ ବିଦ୍ଧ ଯୀଶୁଙ୍କ ଚିତ୍ରପଟକୁ ଦେଖି ନୟନରୁ ଲୋତକ ଧାର ଝରିପଡ଼େ । ଧର୍ମାନ୍ଧ ଲୋକଙ୍କ ଉପରେ କ୍ରୋଧ ଆସେ । ହାଇରେ ମାନବ ! ଅଜ୍ଞାନରେ ଅନ୍ଧ ହୋଇ ଈଶ୍ୱରଙ୍କ ପ୍ରେରିତ ସନ୍ତାନକୁ କାମନାର ଲାଳସାରେ ଏଭଳି ନିର୍ମମ ଭାବରେ ହତ୍ୟାକରି କ'ଣ ବା ପାଇଲ ? ଦୁଃଖରେ ପାଷାଣ ପାଲଟିଯାଆନ୍ତି ମାଷ୍ଟ୍ରେ ।

ଫାଦରଙ୍କ କରସ୍ପର୍ଶରେ ଧ୍ୟାନ ଭାଙ୍ଗିଯାଏ । ଫାଦରଙ୍କୁ କୁଣ୍ଢାଇ-ପକାନ୍ତି । ଜାବ ପଡ଼ିଯାଏ । ସେ ଯେପରି ଫିଟିବାର ନୁହେଁ । ଦୁଇଟି ଶରୀର ଗୋଟିଏ ହୋଇଯାଏ ।

## "ଆତ୍ମା ସହିତ ଆତ୍ମାର ମିଳନ ।"

ଦିନ ପରେ ଦିନ ଗଡ଼ି ଚାଲିଲା । ଉଣେଇଶି ଶହ ବୟାନବେ ମସିହା ଡିସେମ୍ବର ଛଅ ତାରିଖ । ଆମ ଭାରତ ପାଇଁ ଏକ କଳଙ୍କିତ ଦିବସ । ବାବରି ମସଜିଦ୍‌କୁ ଲୋକେ ଯେମିତି ଟିକିଟିକି କରି ଉଡ଼ାଇଦେଲେ, ଆଉ ସେଇ ଖବର ରେଡ଼ିଓରେ ଆଉ ଟି.ଭି. ରେ ପ୍ରଚାରିତ ହେଲା । ତା'ରି ପରିଣାମରେ ଚାଲିଲା ହିନ୍ଦୁ ମୁସଲମାନ ମଧ୍ୟରେ ସାମ୍ପ୍ରଦାୟିକତା ବିବାଦ । କେଉଁଠି ମନ୍ଦିର ଭାଙ୍ଗିଲା ତ କେଉଁଠି ଦଙ୍ଗାଗୋଳ । ସାରା ବିଶ୍ୱକୁ ଦୋହଲାଇଦେଲା- ଏଇ ଭାଇ-ଭାଇର କଳି । ଯେଉଁ ନୟନରେ ସ୍ନେହର ଚାହାଁଣୀ ଲାଖି ରହିଥିଲା, ସେଇ ନୟନରେ କ୍ରୋଧର ନିଆଁ ଝଲସି ଉଠିଲା । ପୋଡ଼ି ଜାଳି ଧ୍ୱଂସ କରିଦେଲା ଭାଇ-ଭାଇର ବନ୍ଧନକୁ । କୋମଳ ହୃଦୟ କଠିନ ହେଲା । କ୍ରୋଧ, ହିଂସା ବ୍ୟାପି ଚାଲିଲା ଶିରା ପ୍ରଶିରାରେ । ଯେଝା ଉପାୟରେ ଯେଝା ମାତିଗଲେ । ଯେଉଁଠି ଦେଖିବ ଖାଲି ଫୁସ୍-ଫାସ୍ ଆଉ ଭୁଷ୍-ଭାଷ୍ । ସୁଯୋଗ ପାଇଲେ ଗଣ୍ଡଗୋଳ ହେବ ।

ଆଉ ଆମ ଏଇ ଗାଁ, ବାଦ ଯିବ କାହିଁକି ? ଦୁଇ ଦଳ ହୋଇଗଲା । କେତେକ ଖଳ ପ୍ରକୃତିର ଲୋକ ଫୁସୁଲା ଫୁସୁଲି କରି ନିଜ ନିଜ ଦଳକୁ ମଜଭୁତ କରିବାରେ ମାତିଗଲେ । କେଉଁ କାଳରୁ ରହି ଆସିଥିବା ସମ୍ପର୍କ ଛିନ୍ନ ହୋଇଗଲା । ମୁଖ୍ୟ ପୁରୋଧା ହେଲେ ମୁସଲମାନ ଦଳର ମୌଲବୀ ସାହେବ ଆଉ ହିନ୍ଦୁ ଦଳର ମୁଖିଆ ଅର୍ଜୁନ ଅହିରି । ଅହି ସହିତ ନକୁଳର ଅଇରି, ବଇରି ହେଲା ।

ସଲିମ୍ ଚାଚା ଯେତେ ଚେଷ୍ଟା କଲେ ମଧ୍ୟ ନିଜ ପୁଅ ରଜାକ୍‌କୁ ରଖି ପାରିଲା ନାହିଁ । ଦିନେ ସଲିମ୍ ଚାଚା ରଜାକ୍‌କୁ ଏତେ ବିଳମ୍ବିତ ରାତିରେ ଆସିବାର କାରଣ ପଚାରିଲା- ଏତେ ରାତି ପର୍ଯ୍ୟନ୍ତ କେଉଁଠି ଥିଲୁ ?

ରଜାକ୍ ନିଜ ବାବାଙ୍କୁ ଭୟକରେ । ସତ କହିଲେ ଅଡୁଆ, ନାହିଁ ବାବା, ମୋ ସାଙ୍ଗର ଜନ୍ମଦିନ ଥିଲା । ସେଇଠି ରହିଯାଇଥିଲି ।

ଭଲକଥା । ଜନ୍ମଦିନରେ ଯୋଗ ଦେବା ମନ୍ଦ ନୁହେଁ । କିନ୍ତୁ ବର୍ତ୍ତମାନ ସମୟ ଭଲ ନୁହେଁ । ସେମାନଙ୍କ ସହିତ ମିଶି ହିଂସାକାଣ୍ଡ ଘଟାଇବା ଭଲ ନୁହେଁ । ମନେରଖ, ଆଜି ନହେଲେ ବି କାଲି ପୁଣି ଆମ ଆମ ଭିତରେ ମିଳାମିଶା ହେବ । ଗାଁ କଥା ତ ଜାଣୁ । କେତେକ ଖଳଲୋକ କେମିତି ବିଭେଦ ସୃଷ୍ଟିକଲେ । ସେମାନଙ୍କ ଜୀବନ ତ କଳଙ୍କିତ ହୋଇଛି । ତୁ ସେମାନଙ୍କ ସହିତ ସାମିଲ ହେଲେ ତୋ ଜୀବନ ନଷ୍ଟ ହୋଇଯିବ । ତୁ ଆଉ ସମାଜରେ ମୁଣ୍ଡଟେକି ଚାଲି ପାରିବୁ ତ ? ତେଣୁ ତୋତେ ସତର୍କ କରାଇଦେଲି ।

ସେ କଥା ଚିନ୍ତା କରନ୍ତୁ ନାହିଁ ଆବାଜାନ୍ । ମୋ ଉପରେ ବିଶ୍ୱାସ ରଖନ୍ତୁ । ମୁଁ ଆଦୌ ଖରାପ କାମ କରୁନାହିଁ । ଆପଣଙ୍କ ଚରଣ ଛୁଇଁ କହୁଛି, ମୁଁ ଜୀବନରେ କେବେ ଖରାପ ବାଟରେ ପାଦ ଦେବି ନାହିଁ ।

ତୋ ଉପରେ ମୋର ବିଶ୍ୱାସ ଅଛି । କିନ୍ତୁ ଏତେ ରାତି ପର୍ଯ୍ୟନ୍ତ ବାହାରେ ରହୁଛୁ । ତୋ ପାଇଁ ଘରେ ସମସ୍ତେ ଅପେକ୍ଷା କରି ବ୍ୟସ୍ତ ହେଉଛନ୍ତି । ସମୟ ବର୍ତ୍ତମାନ ଭଲ ନୁହେଁ । ଏଣିକି ଆଉ ଡେରି କରିବୁ ନାହିଁ ।

''ଦୁର୍ଜନ ମେଳରେ ମିଶିଲେ ଜୀବନର ସର୍ବନାଶ ଘଟେ ।'' ମଣିଷର ଗତିପଥ ବଦଳି ଯାଏ । ଦିନକୁ ଦିନ ଗାଁର ଅବସ୍ଥା ଭୟଙ୍କର ହେଲା । ସାରା ଗାଁରେ ହିଂସାର ନିଆଁ ଜଳିଲା । ହିନ୍ଦୁ ମୁସୁଲମାନଙ୍କ ମଧ୍ୟରେ ଶତ୍ରୁତାର ବିବାଦ ତେଜି ଉଠିଲା ।

ଦୋଳ ପୂନେଇଁ । ମେଳଣ । ଘଣ୍ଟ ବାଜିଲା । ବିମାନ ମେଳଣକୁ ଯିବ । ରୋଷଣୀ ସାଜିଲା । ମାଷ୍ଟ୍ରେ ଯେତେ ବୁଝାଇଲେ ମଧ୍ୟ କେହି

ତାଙ୍କ କଥା ଶୁଣିଲେ ନାହିଁ । ହିନ୍ଦୁମାନେ ମୁସଲମାନଭାଇମାନଙ୍କୁ ଡାକିଲେ ନାହିଁ କି ସେମାନେ ବାଡ଼ି ଖେଳିବାକୁ ଆସିଲେ ନାହିଁ । ଠେଙ୍ଗାବାଡ଼ି ଧରି ଜଗିବସିଲେ । ରୋଷଣୀଟା ମସଜିଦ୍ ବାଟେ ବାଜା ବଜାଇ ଗଲେ, ବାଡ଼ାବାଡ଼ି ହେବ ।

## ''ମସଜିଦ୍ ନିକଟରେ ବାଜା ବଜାଇବା ମନା ।''

ରୋଷଣୀ ଆସିଲା । ବାଜା, ମାଇକ୍‌ରେ ଗାଁ ଦାଣ୍ଡ ଉଚ୍ଛୁଳି ଉଠିଲା । ବିଜୁଳି ଆଲୁଅ ଆଉ ଦପଦପିର ଚିକିମିକି ଆଲୁଅ ଆଖିକୁ ଝଲସାଇ-ଦେଲା । କୀର୍ତ୍ତନ ମଣ୍ଡଳୀର ଉଦ୍ଦଣ୍ଡ ନୃତ୍ୟ ଗାଁ ଲୋକଙ୍କୁ ବିଭୋର କରିଦେଲା । ବସନ୍ତର ମଳୟ ପବନରେ ନାଲି ନେଳି ଅବିରଗୁଡ଼ିକ ଧୂଆଁ ଭଳି ଉଡ଼ିଲା । ବୀର ଦର୍ପରେ ରୋଷଣୀ ଚାଲିଲା । ମସଜିଦ୍ ପାଖ ହୋଇଯିବାରୁ ମାଷ୍ଟ୍ରେ ଓ ମୁଖିଆ ଲୋକମାନେ ବାଜା, ମାଇକ୍, ଘଣ୍ଟ ଆଦି ବାଦ୍ୟକୁ ବନ୍ଦ କରିଦେଲେ । ଠିକ୍ ମସଜିଦ୍ ପାଖରେ କିଏ ଜଣେ ଢେଲାଟିଏ ମାରିଲା । ଘଣ୍ଟୁଆମାନେ ଆଗରେ ଥିଲେ । ରାଗରେ ଘଣ୍ଟକୁ ଜୋରରେ ପିଟିବା ଆରମ୍ଭ କରିଦେଲେ । କ'ଣ ହେଲା, କ'ଣ ହେଲା ବୋଲି ମାଷ୍ଟ୍ରେ ଆଉ ମୁଖିଆମାନେ ଭିଡ଼ଠେଲି ଆଗକୁ ଚାଲିଲେ । ରାଗ ବଢ଼ିଗଲା । ମସଜିଦ୍ ପାଖରେ ଜଗିରହିଥିବା ମୁସଲମାନମାନେ ଠେଙ୍ଗାବାଡ଼ି ଧରି ପିଟିବାରେ ଲାଗିଗଲେ । ଏମାନେ ବି ଛାଡ଼ିବାର ଲୋକ ନୁହନ୍ତି । ଚାଲିଲା ରାମ ରାବଣ ଯୁଦ୍ଧ ।

ରଜାକ୍ ତ ସେହି ଘରର ପିଲା । ସେ କାହିଁକି ଏଥିରୁ ବାଦ୍ ପଡ଼ିବ । ଠେଙ୍ଗାଧରି କଷିଦେଲା ପାହାର ଉପରେ ପାହାର । ଏଇ ଗଣ୍ଡଗୋଳକୁ ରୋକିବା ପାଇଁ ମାଷ୍ଟ୍ରେ ମଝିରେ ପଶିଯାଇଥିଲେ । ରଜାକ୍‌ର ପାହାରରେ ମାଷ୍ଟ୍ରେ ତଳେ ପଡ଼ିଗଲେ । ମୁଣ୍ଡଟା ଫାଟିଗଲା । ରକ୍ତରେ ଜୁଡୁବୁଡୁ ହୋଇ

ମୁଖିଆ କୁଣ୍ଢାଇ ଧରିଲେ । ପାଣି ପାଣି ବୋଲି ପାଟି ପାକୁପାକୁ କରୁଥାନ୍ତି । ଜଗା ମାଷ୍ଟ୍ରେ ମରିଗଲେ ଜାଣି ସମସ୍ତେ ଛାଡ଼ି ପଳାଇଗଲେ ।

ଏତିକି ବେଳେ ସଲିମ୍ ଚାଚା ଆସି ଯାହା ଦେଖିଲେ ସେଥିରେ ତାଙ୍କ ମୁଣ୍ଡ ଘୂରାଇଦେଲା । ମସଜିଦ୍ କୁଅରୁ ବଦନା(ଢାଳ)ରେ ପାଣି ଆଣି ପିଆଇ ଦେଲେ । ଗାମୁଛାରେ ବସି ବିଞ୍ଚିଲେ । ହେଲେ ଜଗା ମାଷ୍ଟ୍ରେ ଆଉ ବସି ପାରିଲେ ନାହିଁ । ତଳେ ପଡ଼ିଗଲେ । ସାହିକୁ ଯାଇ ଦୁଇଜଣକୁ ଡାକି ଆଣିଲେ । ଟୋକେଇରେ ବସାଇ କାନ୍ଧେଇ କାନ୍ଧେଇ ଡାକ୍ତରଖାନାକୁ ନେଇଗଲେ । ମୁଖିଆ ମଧ୍ୟ ଖଣ୍ଡିଆ ଖାବରା ହୋଇଯାଇଥିଲେ । ସଲିମ୍ ଚାଚା ତାଙ୍କୁ ଧରି ପଛେପଛେ ଚାଲିଲେ । ସେତେବେଳକୁ ରାତି ବାରଟା ।

ଡାକ୍ତର ସଙ୍ଗେ ସଙ୍ଗେ ଚିକିତ୍ସା ଆରମ୍ଭ କରିଦେଲେ । ସାଲାଇନ୍ ଚାଲିଲା ମାଷ୍ଟ୍ରେଙ୍କ ଦେହରେ । ମୁଖିଆଙ୍କ ମୁଣ୍ଡରେ ଔଷଧ ପଟି ବାନ୍ଧି ଖଟିଆରେ ଶୁଆଇ- ଦେଲେ । ସକାଳ ହେଲା । ଦେଖିଲାବେଳକୁ ସେଇ ରାତିରେ ସ୍କୁଲ ଘରଟିରେ କିଏ ନିଆଁ ଲଗେଇଦେଇଛି । ସବୁ ପୋଡ଼ି ପାଉଁଶ ହୋଇଯାଇଛି । ମାଷ୍ଟ୍ରେ ନାହାନ୍ତି କି ଗାଁରେ ମୁଖିଆ ନାହାନ୍ତି । ଡାକ୍ତରଖାନାରୁ ଖବର ଆସିଲା, ମାଷ୍ଟ୍ରେଙ୍କ ଅବସ୍ଥା ସାଂଘାତିକ । ଡାକ୍ତରଖାନାରେ ଅଛନ୍ତି ।

ଗାଁ ଲୋକଙ୍କର ସୁଅ ଛୁଟିଲା ଡାକ୍ତରଖାନାକୁ ମାଷ୍ଟ୍ରେଙ୍କୁ ଦେଖିବା ପାଇଁ । ଫାଦର ଏ ଖବର ଶୁଣି ଥୟ ଧରି ରହି ପାରିଲେ ନାହିଁ । ସେ ମୌଲବୀଙ୍କୁ ଧରି ଡାକ୍ତରଖାନାକୁ ଚାଲିଲେ । ମାଷ୍ଟ୍ରେଙ୍କ ଅବସ୍ଥା ଦେଖି ଦୁଃଖରେ ଭାଙ୍ଗି- ପଡ଼ିଲେ । ଜୀବନରକ୍ଷା ଲାଗି ଡାକ୍ତରଖାନାର ଘାସପଡ଼ିଆ ଉପରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ ।

''ଜୀବନ ଦଇବର ଅଧୀନ ।'' ସେ ଯାହାକୁ ରଖିବେ ତାକୁ କେହି ଛଡ଼ାଇ ନେଇ ପାରିବେ ନାହିଁ । ଆଉ ଯାହାକୁ ନେବେ, ତାକୁ କେହି ରଖି ପାରିବେ ନାହିଁ । ଈଶ୍ୱରଙ୍କର ବୋଧେ ସେଇଆ ଇଚ୍ଛା ଥିଲା ।

ସବୁ ଆଶା ନିରାଶାରେ ପରିଣତ ହେଲା । ଡାକ୍ତରବାବୁ ଆଖିରୁ ଲୁହପୋଛି ଫାଦରଙ୍କ ନିକଟରେ ପହଞ୍ଚିଲେ । ମୁଁ ଭାରି ଦୁଃଖିତ । ଅନେକ ଚେଷ୍ଟାକରି ତାଙ୍କୁ ବଞ୍ଚାଇ ପାରିଲି ନାହିଁ । ଉପସ୍ଥିତ ଲୋକମାନେ ଏହାଶୁଣି ଭୋ ଭୋ କରି କାନ୍ଦିପକାଇଲେ । ଡାକ୍ତରଖାନାରେ ଶୋକର ଛାୟା ଖେଳିଗଲା ।

ମାଷ୍ଟ୍ରେ ଶୋଇଥିବା ଧଳା ଚାଦର ଘୋଡ଼ା ଖଟିଆଟି ବାହାରକୁ ବାହାରିଲା । ଶୋକାକୁଳ ଜନତା ମାଷ୍ଟ୍ରଙ୍କ ଉପରେ ଫୁଲମାଳ ଦେଇ ଶେଷ ଦର୍ଶନ କଲେ । ଶବାଧାର ଗାଁକୁ ଗଲା । ପଛରେ ଶହ ଶହ ଲୋକ । ସ୍କୁଲ ପାଖରେ ଥିବା ମଶାଣିରେ ଜୁଇ ଜଳିଲା । କ୍ଷଣକ ମଧ୍ୟରେ ରକ୍ତ-ମାଂସ ଶରୀର ପୋଡ଼ି ପାଉଁଶ ହୋଇଗଲା ।



ଫାଦର ଗାଁ ଲୋକମାନଙ୍କୁ ମିଳିମିଶି ଯିବାପାଇଁ ଅନୁରୋଧ କଲେ । ଡାକ୍ତରବାବୁ ଓ ମୌଲବୀ ସାହେବ ସମସ୍ତଙ୍କୁ ବୁଝାଇଲେ । ଲୋକମାନେ ନିଜନିଜର ଭୁଲ୍ ବୁଝି ପାରିଲେ ।

ରଜାକ୍ ମଧ ନିଜର ଭୁଲ ବୁଝି ପାରିଲା । ନିଜର ଅପକର୍ମ ପାଇଁ ଦେବତା ଭଳି ଗୁରୁଙ୍କୁ ହରାଇ ଯେଉଁ ଅପରାଧ କରିଛି, ସେହି ଅପରାଧରୁ ମୁକ୍ତି ପାଇଁ ଜୁଇ ପାଉଁଶରୁ ମୁଠାଏ ଧରି ଶପଥକରି କହିଲା- ଟିକିଏ ଭୁଲ୍ ପାଇଁ କେମିତି ଗାଁର ଶିରି ତୁଟିଗଲା । ପୂଜ୍ୟ ଗୁରୁଜୀ ଚାଲିଗଲେ । ସ୍କୁଲଘର ପୋଡ଼ି ପାଉଁଶ ହେଲା । ମେଳଣ ଭାଙ୍ଗିଲା । ସେଥିପାଇଁ ମୁଁ ଦାୟୀ । ମୋତେ କ୍ଷମାକର ଗୁରୁଦେବ । ମୁଁ ଆଉ ଜୀବନରେ ଏମିତି ଭୁଲ୍ କରିବି ନାହିଁ । ସେଇ ପାଉଁଶରୁ ନିଜ ମୁଣ୍ଡରେ ତିଳକ କାଟିଲା, ବୁଲି ବୁଲି ଲୋକଙ୍କ ମୁଣ୍ଡରେ ମାରିଲା । ସତ୍ୟର ମୁଣ୍ଡରେ ତିଳକ ବିଭୂତି ଲଗାଇ କୁଣ୍ଢାଇ-ପକାଇଲା । କାନ୍ଦି କାନ୍ଦି କହିଲା, ଭାଇ ମୋତେ କ୍ଷମା କର ।

ଦୂରରେ ଠିଆହୋଇ ଫାଦର, ମୁଖିଆ, ସଲିମ୍ ଚାଚା ଆଉ ଡାକ୍ତର ବାବୁ ଦେଖି ଅବାକ୍ ହୋଇଗଲେ । ଚୁଗୁଲି କରୁଥିବା ଲୋକମାନଙ୍କ ମୁଣ୍ଡ ତଳକୁ ହୋଇଗଲା । ନିଜ ନିଜର ଜିଦ୍ ପାଇଁ ଗାଁର ଯେ କେତେ କ୍ଷତି ହେଲା, ତାହା ବୁଝି ପାରିଲେ । ରଜାକ୍‌କୁ ସମସ୍ତେ କ୍ଷମା ଦେଲେ ।

ଫାଦରଙ୍କ ଅନୁରୋଧରେ ଗୋଟିଏ ଶାନ୍ତି ପରିଷଦ ଗଠନ ହେଲା । ମାଷ୍ଟ୍ରଙ୍କ ନାମ ଅନୁସାରେ 'ଜଗନ୍ନାଥ ଶାନ୍ତି ପରିଷଦ' ନାମ ଦିଆଗଲା । ଏଥିରୁ ହିନ୍ଦୁ ଓ ମୁସଲମାନ ଭାଇମାନେ ସଭ୍ୟ ରହିଲେ । ଗାଁରୁ ଚାନ୍ଦା ଆଦାୟ ହେଲା । ପୁଣି ସ୍କୁଲ ଘର ତିଆରି ହେଲା । ପିଲାମାନେ ପୁଣି ସ୍କୁଲରେ ଆସି ପାଠ ପଢ଼ିଲେ ।

ସ୍କୁଲ ଆଗରେ ମାଷ୍ଟ୍ରଙ୍କ ପ୍ରତିମୂର୍ତ୍ତି ତିଆରି ହେଲା । ଆଖପାଖ ଗାଁର ଲୋକମାନେ ଆସିଲେ । ସଭା ହେଲା । ଫାଦର ଲୋକମାନଙ୍କୁ କହିଲେ- ଭାଇ ଓ ଭଉଣୀମାନେ ! ପରଶମଣିର ଆଲୋକ ସବୁଦିନ ପାଇଁ ଆମ ପାଖରୁ ଲିଭିଗଲା । ଯାହାଙ୍କର ପରଶ ପାଇଁ ଆମ ଏଇ ଗାଁ ଆଲୋକିତ

ହେଉଥିଲା, ଆଜି ତାହା ଆମ ପାଖରେ ନାହିଁ । ଅନ୍ଧକାର, ଖାଲି ଅନ୍ଧକାର...। କ'ଣ କହି ତୁମ୍ଭମାନଙ୍କୁ ବୁଝେଇବି ଭାଷା ପାଉନାହିଁ । ଆମେ ଆଉ ସେହି ରକ୍ତମାଂସ ଶରୀରର 'ପରଶ ମଣିକୁ' ଦେଖି ପାରିବା ନାହିଁ । ବିପଦ ଆପଦ ବେଳେ ଆମକୁ ସାନ୍ତ୍ୱନା ଦେବାକୁ ସେ ଆଉ ନାହାନ୍ତି । ଏହା ଆମପାଇଁ ଏକ ଦାରୁଣ ଆଘାତ । ଗଲା କେଇ ବର୍ଷ ଧରି ଆମ ଏଇ ଗାଆଁ କହିଲେ ଠିକ୍ ହେବ ନାହିଁ, ଏ ଅଞ୍ଚଳକୁ ଜ୍ଞାନର ଆଲୋକ ଦେଇ ଦୀପ୍ତିମନ୍ତ କରିଥିଲେ, ତାହା ଭୁଲିବାର ନୁହେଁ ।

ସବୁ ଧର୍ମ ସମାନ । ଯିଏ ଆଲ୍ଲା ସେଇ ଭଗବାନ । ରୂପ ଅଲଗା ହେଲେ ମଧ ଆତ୍ମା ଏକ । ମୁକ୍ତି ପାଇଁ ସେ ଯେଉଁ ପଥ ଦେଖାଇଛନ୍ତି ରୂପର ଭିନ୍ନତା ଆମ୍ଭମାନଙ୍କୁ ଅନ୍ଧ କରିଦେଇଛି । ହିଂସା ଆଉ କ୍ରୋଧର କବଳରେ ପଡ଼ି ସେଇ ଅନ୍ଧାର ପଛରେ ଧାଇଁଛେ । ଅପକର୍ମ କରୁଛେ ।

ସବୁ ଧର୍ମକୁ ସମ୍ମାନ ଦେବା ଆମର କର୍ତ୍ତବ୍ୟ । ସମସ୍ତଙ୍କୁ ଭଲ ପାଇବା ଆମର ଦାୟିତ୍ୱ । ଏ କଥା ବୁଝିବା ଦରକାର । ଆସ, ଆଜିଠାରୁ ଆମେ ସମସ୍ତେ ଭାଇଭାଇ । ଜାତି, ଧର୍ମ, ରଙ୍ଗର ବିଚାର ନକରି ଏକତା ବନ୍ଧନରେ ବାନ୍ଧିହେବା, ନାନାଜାତି ଫୁଲର ଗୋଟିଏ ସୂତାରେ ଗୁନ୍ଥା ହୋଇଥିବା ଫୁଲମାଳ ଭଳି । ତା'ହେଲେ ଯାଇ ଆମେ ହସିପାରିବା । ଗାଁ ହସିବ ।

ଗାଁ ହସିଲେ ଦେଶ ହସିବ । ହିନ୍ଦୁଭାଇଙ୍କ ପର୍ବରେ ଆମେ ମିଶିବା । ମୁସଲମାନ ଭାଇଙ୍କ ଇଦ୍ ପର୍ବରେ ଇଦ୍ ମୋବାରକ ଜଣାଇବା । ଖ୍ରୀଷ୍ଟିଆନ ଭାଇଙ୍କ ବଡ଼ଦିନ ପର୍ବରେ ଶୁଭେଚ୍ଛା ଜଣାଇବା ।

ଆମର ପୂଜ୍ୟ ଗୁରୁ ଆମ୍ଭମାନଙ୍କୁ ସତ୍ୟ ଅହିଂସାର ପଥ ଶିଖାଇଛନ୍ତି, ତାହା ଆମେ ଅକ୍ଷରେ ଅକ୍ଷରେ ପାଳନ କରିବା । ମନରେ ରାଗଭାବ ଆଣି ଅନ୍ୟାୟ କାର୍ଯ୍ୟ କରିବା ନାହିଁ । ମୋର ବିଶ୍ୱାସ, ତାଙ୍କରି ଆତ୍ମା ଆମରି କାମକୁ ନିଶ୍ଚୟ ଦେଖିବ । ଆମେ ଯଦି ହିଂସା ବା ଅସତ୍ ପଥ ଆଚରଣ କରିବା, ତା'ହେଲେ ତାଙ୍କର ସ୍ୱର୍ଗତ ଆତ୍ମା ବ୍ୟଥିତ ହେବ ।

## ''ବିପଦରୁ ଶିକ୍ଷା ମିଳେ ।''

ଯାହାର ଜୀବନରେ କିଛି ଘଟିନାହିଁ ତା' ଜୀବନ ଅପୂର୍ଣ୍ଣ । ଆମ ପାଇଁ ଏଇ ଯେଉଁ ବିପଦ ଘଟିଗଲା, ତାହା ଆମକୁ ଏକମନ ଏକପ୍ରାଣ କରୁ । ଛୋଟ ମନ ନେଇ ଛୋଟ ଛୋଟ ଘଟଣା ଆମକୁ ଅଲଗା ନକରୁ, ଏତିକି ମୋର କାମନା ।

ଆସ ସମସ୍ତେ ମିଶି ମାଷ୍ଟ୍ରଙ୍କ ଅମର ଆତ୍ମାର ସଦ୍‌ଗତି କାମନା କରିବା । ଦୁଇ ମିନିଟ୍ ନୀରବ ପ୍ରାର୍ଥନା କରି ଭଗବାନଙ୍କୁ ଜଣାଇବା । ନୀରବ ପ୍ରାର୍ଥନା କରିସାରିବା ପରେ ସଲିମ୍ ଚାଚାଙ୍କ କଣ୍ଠରୁ ଉଚ୍ଚ ସ୍ୱରରେ ଶୁଭିଲା- ଆଲ୍ଲା ହୋ ଆକବର ଆଲ୍ଲା......

ତା'ପରେ ବିସ୍‌ମିଲ୍ଲା ହିର୍ ରହେମାନ ନିର୍ ରହିମ୍ କହି ପବିତ୍ର କୋରାନ୍‌ର ବାଇଶିତମ ଅଧ୍ୟାୟର ''ୟାସିନ ଓ୍ୱଲ କୁରାନିଲ ହକିମ୍....... (ଶୁରେୟାସିନ) ପାଠ କଲାପରେ ଦୁଇ ହାତରେ ମାଷ୍ଟ୍ରଙ୍କ ଅମର ଆତ୍ମାର ସଦ୍‌ଗତି ନିମନ୍ତେ ଆଲ୍ଲାଙ୍କୁ ଅନ୍ତରର ନିବେଦନ ଜଣାଇଲା ।

ଫାଦର ଠିଆହୋଇ ମୁଣ୍ଡ ଓ ଛାତିରେ ହାତମାରି ମାଷ୍ଟ୍ରଙ୍କ ଅମର ଆତ୍ମାର ସଦ୍‌ଗତି ପାଇଁ ପ୍ରଭୁ ଯୀଶୁଙ୍କୁ ପ୍ରଣାମ ଜଣାଇ କହିଲେ, ହେ ଈଶ୍ୱରଙ୍କ ପ୍ରେରିତ ପୁତ୍ର ! ଏମାନେ ଅଜ୍ଞ, ଏମାନଙ୍କୁ କ୍ଷମାକରି ସୁଖ ଶାନ୍ତିରେ ଚଳିବାକୁ ପଥ ଦେଖାଅ । ଏଇ ଗାଁର ସୁଖଶାନ୍ତି ଫେରାଇଦିଅ ପ୍ରଭୁ !

ଉପସ୍ଥିତ ଜନତାଙ୍କ ଆକୁଳ ନିବେଦନ ଭଗବାନଙ୍କ ଆସ୍ଥାନକୁ ଦୋହଲାଇ ଦେଲା । ଦୂର ଗାଁ ଦେବାଳୟରୁ ଶଙ୍ଖ ଘଣ୍ଟା ସୁର ଭାସି ଆସିଲା ।

ମାଷ୍ଟ୍ରେଙ୍କ ଆବକ୍ଷ ମୂର୍ତ୍ତିର ଆଖି ଏଇ ଗାଁର ସୁଖ-ଶାନ୍ତିକୁ ଦେଖିବା ପାଇଁ ସୁବିଦିନ ଖୋଲା ରହିଲା ।





ଶ୍ରୀ ଧରଣୀଧର ପରିଡ଼ା ଶିଶୁ ଶିକ୍ଷାର ବିକାଶ ନିମନ୍ତେ ଶିଶୁମାନଙ୍କର ପ୍ରତ୍ୟକ୍ଷ ଅନୁଭୂତିକୁ ନେଇ ଶିଶୁ ଗଳ୍ପ ଓ ଶିଶୁ କବିତାମାନ ରଚନା କରି ଆସୁଛନ୍ତି । ତାଙ୍କର ପ୍ରକାଶିତ "ଅନ୍ଧାରରୁ ଆଲୁଅକୁ" ପୁସ୍ତକଟି ବେଶ୍ ଲୋକପ୍ରିୟ ହୋଇପାରିଛି ।

ଶିକ୍ଷକତା ସହିତ ଜାତୀୟ କାର୍ଯ୍ୟକରି ୧୯୯୧ ମସିହା ଜନଗଣନା କାର୍ଯ୍ୟରେ "ରୌପ୍ୟ ପଦକ" ଓ "ନିଖିଳ ଉତ୍କଳ ଶିଶୁମେଳା ସମିତି" ଚଣ୍ଡିଖୋଲ ତରଫରୁ ଆଦର୍ଶ ଶିକ୍ଷକ ଭାବରେ ସମ୍ମାନିତ ହୋଇଛନ୍ତି ।

ବିଭିନ୍ନ ଶିଶୁ ସାହିତ୍ୟ ପତ୍ରିକାରେ ଶିଶୁ ଗଳ୍ପ ଓ କବିତାମାନ ପ୍ରକାଶିତ ହୋଇଛି । ତାଙ୍କ ରଚିତ "ପରଶମଣି" ସମାଜର କୁସଂସ୍କାର ଓ ଅନ୍ଧ ବିଶ୍ୱାସକୁ ଦୂର କରିବାର ପ୍ରୟାସ ନେଇ ପ୍ରକାଶିତ ।

ସେ ବର୍ତ୍ତମାନ ନେଉଳପୁର ପ୍ରାଥମିକ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟରତ ।

ପ୍ରକାଶିକା